# ଶିକ୍ଷକ ସାଥୀ



ଓଡ଼ିଶା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ କର୍ତ୍ତୃପକ୍ଷ, ଭୁବନେଶ୍ୱର

DPEP

ଜିଲା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ
DISTRICT PRIMARY EDUCATION PROGRAMME

# ଶିକ୍ଷକ ସାଥୀ

## ଦ୍ୱିତୀୟ ଶ୍ରେଣୀ

(ଦ୍ୱିତୀୟ ଶ୍ରେଣୀ ପାଇଁ ଭାଷା ଓ ପରିବେଶ ଅଧ୍ୟୟନର ସମନ୍ୱିତ ପୁସ୍ତକ 'ହସ ଖୁସି'ର ଶିକ୍ଷକ ସହାୟକ ପୁସ୍ତକ)

ଓଡ଼ିଶା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ କର୍ତ୍ତୃପକ୍ଷ
**ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ**
ଓଡ଼ିଶା, ଭୁବନେଶ୍ୱର

# ଶିକ୍ଷକ ସାଥୀ

(ଦ୍ୱିତୀୟ ଶ୍ରେଣୀ ପାଇଁ ଭାଷା ଓ ପରିବେଶ ଅଧ୍ୟୟନର
ସମନ୍ୱିତ ପୁସ୍ତକ 'ହସ ଖୁସି'ର ଶିକ୍ଷକ ସହାୟକ ପୁସ୍ତକ)

## ଦ୍ୱିତୀୟ ଶ୍ରେଣୀ

ପରୀକ୍ଷା ମୂଳକ ସଂସ୍କରଣ

ପ୍ରକାଶନ ସମୟ - ୨୦୦୩

ଲେଖକ ମଣ୍ଡଳୀ :
ଓଡ଼ିଶା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ କର୍ତ୍ତୃପକ୍ଷଙ୍କ
ଦ୍ୱାରା ନିଯୁକ୍ତ ଲେଖକ ମଣ୍ଡଳୀ

ପ୍ରକାଶକ :
ପ୍ରକଳ୍ପ ନିର୍ଦ୍ଦେଶକ,
ଓଡ଼ିଶା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ କର୍ତ୍ତୃପକ୍ଷ
ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ, ଭୁବନେଶ୍ୱର

ମୁଦ୍ରଣ :
ସରକାରୀ ପାଠ୍ୟପୁସ୍ତକ ମୁଦ୍ରଣାଳୟ
ଭୁବନେଶ୍ୱର

# ସୂଚୀପତ୍ର


| କ୍ର.ନଂ. | ବିଷୟ | ପୃଷ୍ଠା |
|---|---|---|
| ୧. | ଗାଆଁରେ ସକାଳ | ୧ |
| ୨. | କହିଲ ଦେଖି | ୫ |
| ୩. | ଅମୂଲ୍ୟର ହଟହଟା | ୯ |
| ୪. | କ୍ରିକେଟ ଖେଳ | ୧୨ |
| ୫. | ଗରମ ଗରମ ପୁରି | ୧୬ |
| ୬. | ମିନି ଖୁଁ ଖୁଁ ମାଛି ଭୁଁ ଭୁଁ | ୧୯ |
| ୭. | ଚମ୍ପା ଓ ଚମ୍ପକର ବାହାଘର | ୨୩ |
| ୮. | ସପର୍... ର...ସପ୍ | ୨୬ |
| ୯. | ବାଘର କମାଲ | ୨୯ |
| ୧୦. | ଏମିତି ବି ହୁଏ | ୩୨ |
| ୧୧. | ଅତିରୁ ଇତି | ୩୫ |
| ୧୨. | ଚୋର, ଧୋ.... ଧୋ.... | ୩୯ |
| ୧୩. | ଜଗୁନୀ ହେଲା ସୁନା ପିଲା | ୪୨ |
| ୧୪. | ଦେଖତ ପିନ୍ଧି ଦେଖ | ୪୬ |
| ୧୫. | ପାଇଲା ପାନେ | ୪୯ |
| ୧୬. | ଚାଲ ବୁଲିଯିବା ଗାଆଁରୁ ସହର | ୫୨ |
| ୧୭. | ଓଃ ମୁଁ କ'ଣ କରିବି | ୫୫ |
| ୧୮. | ତୁ କେଉଁଠି ଅଛୁ | ୫୮ |
| ୧୯. | ମୋ ଗାଁ | ୬୧ |
| ୨୦. | ଆସ ଜାଣିବା ଋତୁମାନଙ୍କୁ | ୬୪ |
| ୨୧. | ବେଙ୍ଗ ହେଲା ରାଜା | ୬୬ |
| ୨୨. | ଆସ ସଜାଡ଼ିବା ପଡା ଘରକୁ | ୬୯ |
| ୨୩. | ଫେରି ବାଲା | ୭୨ |
| ୨୪. | ଉପର ବାଲା ତଳ ବାଲା | ୭୫ |
| ୨୫. | ମୂଷା ଯାଉଛି ଦେଖ | ୭୮ |
| ୨୬. | ମିକିର ଯଜ୍ଞ ଦେଖା | ୮୧ |
| ୨୭. | ଆମ ଜାତୀୟ ପର୍ବପର୍ବାଣି | ୮୪ |
| ୨୮. | ଆମ ଘର | ୮୮ |

# ମୁଖବନ୍ଧ

ଡିପିଇପି ତରଫରୁ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ ପାଇଁ ଶିକ୍ଷଣ କାର୍ଯ୍ୟ ଭିତ୍ତିକ ପାଠ୍ୟପୁସ୍ତକ ପ୍ରସ୍ତୁତ କରାଯାଇଛି । ପୂର୍ବ ପାଠ୍ୟ ପୁସ୍ତକ ଗୁଡ଼ିକ କେବଳ ଦକ୍ଷତା ଉପରେ ଆଧାରିତ ଥିବା ସ୍ଥଳେ ନୂତନ ପାଠ୍ୟପୁସ୍ତକ ଗୁଡ଼ିକ ଦକ୍ଷତା, କାର୍ଯ୍ୟଭିତ୍ତିକ ତଥା ସ୍ୱଶିକ୍ଷଣ ଉପରେ ଆଧାରିତ । ପ୍ରଥମ ଶ୍ରେଣୀରେ ଭାଷା, ଗଣିତ ଓ ପରିବେଶ ଅଧ୍ୟୟନ ପାଇଁ ପୂର୍ବରୁ ପୃଥକ୍ ପୃଥକ୍ ପାଠ୍ୟପୁସ୍ତକ ପ୍ରଚଳିତ ଥିଲା । କିନ୍ତୁ ଏହି ନୂତନ ପାଠ୍ୟପୁସ୍ତକରେ ଉପରୋକ୍ତ, ତିନୋଟି ବିଷୟକୁ ମିଶାଇ ଏକ ସମନ୍ୱିତ ପାଠ୍ୟପୁସ୍ତକ ପ୍ରସ୍ତୁତ କରାଯାଇଛି । ଏହି ପାଠ୍ୟପୁସ୍ତକର ପ୍ରତ୍ୟେକ ବିଷୟକୁ ପାଠ କଲାପରେ ଛାତ୍ରଛାତ୍ରୀମାନେ ଭାଷା, ଗଣିତ ଓ ପରିବେଶ ସମ୍ପର୍କୀୟ ଆବଶ୍ୟକ ଦକ୍ଷତା ହାସଲ କରିବାରେ ସମର୍ଥ ହେବେ । ସେହିପରି ଦ୍ୱିତୀୟ ଶ୍ରେଣୀର ଭାଷା ଓ ପରିବେଶ ଅଧ୍ୟୟନକୁ ନେଇ ଏକ ସମନ୍ୱିତ ପାଠ୍ୟପୁସ୍ତକ ପ୍ରସ୍ତୁତ କରାଯାଇଥିବା ବେଳେ ଗଣିତ ପାଇଁ ଏକ ସ୍ୱତନ୍ତ୍ର ପାଠ୍ୟ ପୁସ୍ତକ ପ୍ରସ୍ତୁତ ହୋଇଛି । ତୃତୀୟ ଶ୍ରେଣୀର ଭାଷା ଓ ଗଣିତ ପାଇଁ ପୃଥକ ପୃଥକ ପାଠ୍ୟ ପୁସ୍ତକ ପ୍ରସ୍ତୁତ କରାଯାଇଥିବାବେଳେ ସାମାଜିକ ପାଠ ଏବଂ ସାଧାରଣ ବିଜ୍ଞାନକୁ ନେଇ ଏକ ସମନ୍ୱିତ ପାଠ୍ୟପୁସ୍ତକ ପ୍ରସ୍ତୁତ କରାଯାଇଛି ।

ପିଲାମାନେ ସାଧାରଣତଃ ଛବି ପ୍ରିୟ । ସେମାନଙ୍କର ମାନସିକ ଅବସ୍ଥାକୁ ବିଚାର କରି ଏଥିରେ ଛବି ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି । ଏହାକୁ ଅଧିକ ଆକର୍ଷଣୀୟ କରିବା ପାଇଁ ଏହାର ପ୍ରଚ୍ଛଦପଟକୁ ବହୁରଙ୍ଗ ବିଶିଷ୍ଟ କରାଯିବା ସଂଗେ ସଂଗେ ଭିତର ପୃଷ୍ଠାଗୁଡ଼ିକୁ ଦ୍ୱିରଙ୍ଗ କରାଯାଇଛି । କେତେକ ପ୍ରସଙ୍ଗକୁ କେବଳ ଚିତ୍ର ମାଧ୍ୟମରେ ଉପସ୍ଥାପନା କରାଯାଇଥିବା ସ୍ଥଳେ ଆଉ କେତେକ ପ୍ରସଙ୍ଗକୁ ଗପ, ଗୀତ ଏବଂ କଥୋପକଥନ ଜରିଆରେ ଉପସ୍ଥାପନ କରାଯାଇଛି ।

ପୂର୍ବ ପାଠ୍ୟପୁସ୍ତକ ସହିତ ଅଭ୍ୟସ୍ତ ଆମର ଶିକ୍ଷକ ଶିକ୍ଷୟିତ୍ରୀମାନେ ନୂତନ ଭାବରେ ପ୍ରସ୍ତୁତ ଏହି ପାଠ୍ୟପୁସ୍ତକକୁ ଶ୍ରେଣୀରେ ଉପସ୍ଥାପନା କରିବାରେ ହୁଏତ କେତେକ ଅସୁବିଧା ଅନୁଭବ କରିପାରନ୍ତି । ସେମାନଙ୍କର ଅସୁବିଧା ଦୂରୀକରଣ ପାଇଁ ଏହି ପୁସ୍ତକଟିର ପରିକଳ୍ପନା ।

ପାଠ୍ୟପୁସ୍ତକରେ କେତେକ ତଥ୍ୟ, ସୂଚନା ଓ ଉଦାହରଣ ଆଦି ରହିବାର ଆବଶ୍ୟକତା ଅନୁଭୂତ ହେଉଥିଲେ ହେଁ ଏହାର କଳେବର ବୃଦ୍ଧି ଆଶଙ୍କାରେ ସେସବୁକୁ ପାଠ୍ୟପୁସ୍ତକରେ ରଖା ନଯାଇ ଏହି ଶିକ୍ଷକ ସହାୟକ ପୁସ୍ତକରେ ସ୍ଥାନିତ କରାଯାଇଛି । ଶିକ୍ଷକ ଶିକ୍ଷୟିତ୍ରୀମାନେ ପାଠ୍ୟ ବିଷୟବସ୍ତୁ ଉପସ୍ଥାପନା ସମୟରେ ଏହାର ଉପଯୋଗ କରି ପାରିବେ ।

କୌଣସି ଏକ ପ୍ରସଙ୍ଗକୁ ପଢ଼ାଇବା ପୂର୍ବରୁ ପ୍ରସଙ୍ଗର ଉଦ୍ଦେଶ୍ୟ, ଏଥିପାଇଁ ଆବଶ୍ୟକ ସମୟ, ପ୍ରସଙ୍ଗର ଉପସ୍ଥାପନା ଶୈଳୀ ଏବଂ ପୂର୍ବ ପ୍ରସ୍ତୁତି ସମ୍ପର୍କରେ ଏଥିରେ ସମ୍ୟକ ସୂଚନା ଦିଆଯାଇଛି ।

ଛାତ୍ରଛାତ୍ରୀମାନେ ଶିକ୍ଷଣ କାର୍ଯ୍ୟରେ ସକ୍ରିୟ ଅଂଶ ଗ୍ରହଣ କରିବା ନିମିତ୍ତ କେତେକ ସକ୍ରିୟାତ୍ମକ କାର୍ଯ୍ୟ, ଚିତ୍ରକାର୍ଡ଼, ଶବ୍ଦକାର୍ଡ଼, ଫ୍ଲାସ୍‌କାର୍ଡ଼, ଅକ୍ଷରକାର୍ଡ଼, ଶବ୍ଦ ଖେଳ, ମାଥିସ୍ ଓ ଟାନ୍‌ଗ୍ରାମ୍ ଆଦି ବ୍ୟବହାର କରିବାର କୌଶଳ ସଂପର୍କରେ ମଧ୍ୟ ସୂଚନା ଦିଆଯାଇଛି ।

ସବୁ ସମୟରେ ଶ୍ରେଣୀର ସମସ୍ତ ପିଲାଙ୍କୁ ବ୍ୟକ୍ତିଗତ ଭାବରେ ଦୃଷ୍ଟି ଦେବା କଷ୍ଟକର ହୋଇଥାଏ । ତେଣୁ ସମସ୍ତ ଛାତ୍ରଛାତ୍ରୀ କିପରି ଶିକ୍ଷଣ କାର୍ଯ୍ୟରେ ଅଂଶ ଗ୍ରହଣ କରିପାରିବେ ସେଥିପାଇଁ ଶିକ୍ଷକ ଶ୍ରେଣୀରେ ଦଳଗଠନ କରି ସମସ୍ତଙ୍କୁ କାର୍ଯ୍ୟରେ ନିୟୋଜିତ କରିଥାନ୍ତି । ଏହି ପୁସ୍ତକଟିରେ ଅନେକ ଦଳଗତ କାର୍ଯ୍ୟ ଓ ଏହାର ପରିଚାଳନା ସମ୍ପର୍କରେ ଆଲୋଚନା କରାଯାଇଛି ।

ବିଷୟବସ୍ତୁକୁ ସରସ ଓ ସୁନ୍ଦର ଭାବରେ ଉପସ୍ଥାପନା କରିବା ପାଇଁ ପ୍ରତି ବିଷୟ ନିମିତ୍ତ କି କି ଉପକରଣ ଆବଶ୍ୟକ ତାହାର ସୂଚନା ମଧ୍ୟ ଏଥିରେ ଦିଆଯାଇଛି । ଏତଦ୍ ବ୍ୟତୀତ ଆପଣମାନେ ନିଜ ପରିବେଶରୁ ବିନା ମୂଲ୍ୟ ବା ସ୍ୱଳ୍ପମୂଲ୍ୟର ଅନ୍ୟାନ୍ୟ ଆବଶ୍ୟକ ଉପକରଣ ସଂଗ୍ରହ କରି ବ୍ୟବହାର କରିପାରିବେ ।

ବିଷୟ ବସ୍ତୁକୁ ଭିତ୍ତି କରି କେତେକ ପ୍ରକଳ୍ପ କାର୍ଯ୍ୟର ନମୁନା ମଧ୍ୟ ଏଥିରେ ଦିଆଯାଇଛି । ଏହା ଯଥେଷ୍ଟ ବା ସର୍ବୋତ୍କୃଷ୍ଟ ବୋଲି ଭାବିବା ଉଚିତ୍ ନୁହେଁ । ଏଗୁଡ଼ିକ କରାଇବା ସଙ୍ଗେ ସଙ୍ଗେ ନିଜ ପରିବେଶକୁ ଲକ୍ଷ୍ୟକରି ଏହିଭଳି ଆହୁରି ଅନେକ ପ୍ରକଳ୍ପ କାର୍ଯ୍ୟ ମଧ୍ୟ ଆପଣମାନେ କରିପାରିବେ ।

ଛାତ୍ରଛାତ୍ରୀମାନଙ୍କର ଶିକ୍ଷଣ ଉପଲବ୍ଧି ସ୍ତରର ମୂଲ୍ୟାୟନ ପାଇଁ ଗୋଟିଏ ଶିକ୍ଷା ବର୍ଷରେ କେତୋଟି ଏକକ ପରୀକ୍ଷଣ ତଥା ଷାଣ୍ମାସିକ ଓ ବାର୍ଷିକ ପରୀକ୍ଷା କରାଯିବ ସେ ସମ୍ପର୍କରେ ସୂଚନା ପ୍ରଦାନ କରାଯାଇଛି । ଏଠାରେ ସ୍ପଷ୍ଟ କରି ଦିଆଯାଇପାରେ ଯେ ଏହି ସୂଚନା ଗୁଡ଼ିକ ବାଧ୍ୟତାମୂଳକ ନୁହେଁ । ସ୍ଥାନୀୟ ପରିବେଶ ଏବଂ ପରିସ୍ଥିତିକୁ ବିଚାରକୁ ନେଇ ଏଥିରେ ଆବଶ୍ୟକ ପରିବର୍ତ୍ତନ କରିପାରିବେ ।

ଆଶା, ପାଠ୍ୟ ବିଷୟବସ୍ତୁକୁ ଛାତ୍ରଛାତ୍ରୀଙ୍କ ନିକଟରେ ଯଥାର୍ଥ ଭାବରେ ଉପସ୍ଥାପନ କରିବାରେ ଏହି ପୁସ୍ତକଟି ବିଶେଷ ସହାୟକ ହେବ । ଏହାକୁ ବ୍ୟବହାର କରି ଏଥିରେ ଥିବା ଦୋଷ ଦୁର୍ବଳତାକୁ ସୂଚାଇବା ସହ ଏହା କିପରି ଅଧିକ ଉପଯୋଗୀ ହୋଇପାରିବ ସେ ସଂପର୍କରେ ଗଠନ ମୂଳକ ପ୍ରସ୍ତାବ ମାନ ଦେବାପାଇଁ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଅନୁରୋଧ ।

ବିଜୟ ଅରୋରା

ପ୍ରକଳ୍ପ ନିର୍ଦ୍ଦେଶକ

পাঠ-১

# ଗାଆଁରେ ସକାଳ

ସମୟ - ୧୮ ପିରିୟଡ୍

୧. ଚିତ୍ରରେ କ'ଣ ଅଛି, କହ ।



୨. ଶବ୍ଦଗୁଡ଼ିକ ପଢ଼ ଓ ଲେଖ ।

| | | | | | | | |
|---|---|---|---|---|---|---|---|
| ଗାଈ | | ପକ୍ଷୀ | | ଦାନ୍ତ | | ଥଣ୍ଟ | |
| କୃଷକ | | ସାଇକେଲ | | କୂଅ | | ମଣ୍ଡପ | |

୩.  ଦିଆଯାଇଥିବା ଚିତ୍ରକୁ ଦେଖି ଏଥିରେ କ'ଣ ନାହିଁ ତା'କୁ ଅଙ୍କନ କର ।

୪. ଚିତ୍ର ଦେଖି ଲେଖ ।









୫. ବଳଦ କ'ଣ କ'ଣ ଖାଇ ହଳ କରିବାକୁ ଯିବ ?

ଯେପରି-ଦାନା ________ ________ ________ ________

୬. ଚିତ୍ରକୁ ରଙ୍ଗ କର ।



**କ'ଣ ଶିଖିବେ**

ଭାଷା

◆ ପିଲାମାନେ ଚିତ୍ରକୁ ଭଲଭାବରେ ଦେଖିବେ ଓ ତହିଁରେ ଥିବା ବିଷୟକୁ ନେଇ ଶବ୍ଦ ଲିଖନ କରିବା ସହିତ ସକାଳ ସମୟର ଘଟଣା ବର୍ଣ୍ଣନା କରିବେ ।

ପରିବେଶ

◆ ପରିଷ୍କାର ପରିଚ୍ଛନ୍ନ ଅଭ୍ୟାସ ସମ୍ପର୍କରେ ଜାଣିବେ ।
◆ ପିଲାମାନେ ଜୀବଜନ୍ତୁଙ୍କ ଚିହ୍ନଟ କରିବେ ।

**ସୂଚନା**

◆ ଚିତ୍ରରେ ସକାଳ ସମୟରେ ଘଟୁଥିବା ବିଭିନ୍ନ କାମ ଦିଆଯାଇଛି ।
◆ ଚିତ୍ର ଦେଖି ପିଲାମାନେ ନିଜେ ଘଟଣା ବର୍ଣ୍ଣନା କରିବେ ।
◆ ପିଲାମାନେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ କରୁଥିବା କାର୍ଯ୍ୟକୁ ଜଣକ ପରେ ଜଣେ ମୂକ ଅଭିନୟ କରିବେ । ପିଲାଏ ଅଭିନୟରେ କ'ଣ କଲେ ଅନ୍ୟମାନେ କହିବେ ।

**ପିଙ୍ଗପଙ୍ଗ୍ ଖେଳ**

◆ ପିଲାମାନେ ଗୋଲାକାରରେ ବସିବେ ଓ ଜଣକ ପରେ ଜଣେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ କାର୍ଯ୍ୟକୁ କ୍ରମାନ୍ୱୟରେ କହିବେ ଯେପରି ସକାଳୁ ଉଠିବା, ମୁହଁ ଧୋଇବା, ଦାନ୍ତ ଘଷିବା.... ।

ପ୍ରଶ୍ନ ଖେଳ- ପିଲାମାନେ ଦୁଇଦଳ ହୋଇ ବହିରେ ଚିତ୍ରକୁ ଭଲ ଭାବରେ ଦେଖିବେ । ଗୋଟିଏ ଦଳ ଚିତ୍ର ଦେଖି ଗୋଟିଏ ପ୍ରଶ୍ନ ପଚାରିବେ ଓ ଅନ୍ୟ ଦଳ ଉତ୍ତର ଦେବେ । ପରେ ଦ୍ୱିତୀୟ ଦଳ ପ୍ରଶ୍ନ ପଚାରିବେ ଓ ୧ମ ଦଳ ଉତ୍ତର ଦେବେ । ପ୍ରଶ୍ନ ଗୁଡ଼ିକ ଏପରି ହୋଇପାରେ-

୧. ସ୍କୁଲକୁ କେତେଜଣ ପିଲାଯାଉଛନ୍ତି ?
୨. କେଉଁ କେଉଁ ଗୃହପାଳିତ ପଶୁ ଚିତ୍ରରେ ଅଛନ୍ତି ? ଇତ୍ୟାଦି

**ଦଳଗତ କାର୍ଯ୍ୟ**

ପାର୍ଥକ୍ୟ ଦର୍ଶାଅ

ପିଲାମାନେ ଦୁଇଦଳରେ ବସିବେ । ସକାଳ ସମୟ ଓ ସନ୍ଧ୍ୟାସମୟର ଦୃଶ୍ୟର ଚିତ୍ରକୁ ଦେଖି ପାର୍ଥକ୍ୟ ଦର୍ଶାଇବେ । ଦଳରେ ପରସ୍ପର ପଚରା ପଚରି ହେବେ । ଯେଉଁ ଦଳ ଅଧିକ କହିବ ସେ ଦଳ ପଏଣ୍ଟ ପାଇବ ।

ପିଲାମାନେ ୪ଟି ଦଳରେ ବସିବେ । ସକାଳ ଓ ସନ୍ଧ୍ୟା ସମୟରେ ହେଉଥିବା ବିଭିନ୍ନ ପ୍ରକାର କାର୍ଯ୍ୟକୁ ଚିତ୍ର ଅନୁସାରେ ଦଳରେ ବର୍ଗୀକରଣ କରିବେ । ଯିଏ ଶୀଘ୍ର କହି ପାରିବ, ସେ ବିଜୟୀ ହେବ ।

**ଅନ୍ୟ କାର୍ଯ୍ୟ**

◆ ହସ୍ତକର୍ମ
◆ ମାଟିରେ ପଶୁ, ପକ୍ଷୀ, ଫଳ ଇତ୍ୟାଦି ତିଆରି କରିବା ।

**ପ୍ରକଳ୍ପ କାର୍ଯ୍ୟ**

◆ ପଶୁ, ପକ୍ଷୀଙ୍କ ଖାଦ୍ୟ ତାଲିକା ପ୍ରସ୍ତୁତ କରିବେ ।
◆ ସକାଳ ସମୟର ଚିତ୍ର ସଂଗ୍ରହ କରିବେ ।
◆ କିଏ କ'ଣ ସକାଳେ କରନ୍ତି ସେସବୁ ତଥ୍ୟ ସଂଗ୍ରହ କରିବେ ।
◆ ସକାଳ ଓ ସନ୍ଧ୍ୟା ସମୟର ଗୀତ ସଂଗ୍ରହ କରିବେ ।

**ପିଲାଙ୍କ କାମ**

- ଚିତ୍ରରୁ ବିଭିନ୍ନ ବିଷୟ, ଜିନିଷ, ପ୍ରାଣୀଙ୍କୁ ଖୋଜି ବାହାର କରିବେ ।
- ଖୋଜିଲା ପରେ ପରସ୍ପର ଭିତରେ ପ୍ରଶ୍ନ ପଚାରିବେ ।
- ଚିତ୍ରରେ କିଏ କ'ଣ କରନ୍ତି ବର୍ଣ୍ଣନା କରିବେ ଓ ଲେଖିବେ ।
- ଜୀବଜନ୍ତୁ ଓ ଜିନିଷର ନାମ ତାଲିକା କରିବେ ।
- ଚିତ୍ର ଅଙ୍କନ କରିବେ ।
- ପଶୁପକ୍ଷୀଙ୍କ ସ୍ୱର ଅନୁକରଣ କରିବେ ।

**ଅଭ୍ୟାସ** ପାଠ ଅନୁଯାୟୀ

ଉପକରଣ –

- ସନ୍ଧ୍ୟା ସମୟର ଚିତ୍ର
- ସକାଳ ଓ ସନ୍ଧ୍ୟାର ପ୍ରାକୃତିକ ଦୃଶ୍ୟର ଚିତ୍ର
- କଞ୍ଚାମାଟି

ପାଠ-୨

# କହିଲ ଦେଖି

ସମୟ - ୧୫ ପିରିୟଡ୍

କିଚିରି ମିଚିରି ଶବଦ କରେ
ଘରେ ଘରେ ନୀଡ଼ ରଚନା କରେ
କହି କି ପାରିବ ତା' ନାମ ପିଲେ ?





ଧଳା ରଙ୍ଗ ଅଟେ ଦେହଟି ତା'ର
ଲମ୍ବା ଗୋଡ଼ ଲମ୍ବା ଥଣ୍ଟ ତାହାର
ଜାଣିଛ କି ପିଲେ ନାମ ତାହାର ?

କା' କା' କରି ସିଏ ରାବଇ
ନିଦରୁ ଆମକୁ ଦିଏ ଉଠାଇ
କିଏ ସେ କହିବ ତା' ନାମ ଭାଇ ?





କୁହୁ କୁହୁ ରାବେ ସଞ୍ଜ ସକାଳେ
ବସନ୍ତ ପବନେ ଆମ୍ବ ବଉଳେ
କେଉଁ ପକ୍ଷୀ ସିଏ କହିଲ ପିଲେ ?

ଶାଗୁଆ ଅଟଇ ଦେହଟି ତା'ର
ନାଲିଆ ଥଣ୍ଟ ତା' ବଡ଼ ସୁନ୍ଦର
କହି କି ପାରିବ ନାମ ତାହାର ?





ଘୁମୁରି ଘୁମୁରି ଗାଏ ସେ ଗୀତ
ଖାଏ ଖୁଦ ଧାନ ଖାଏ ସେ ଭାତ
ଭାଡ଼ିରେ ଶୁଏ
କୁହ ପିଲେ ସେଇ ପକ୍ଷୀଟି କିଏ ?

## ଅଭ୍ୟାସ

୧. ଗାର ଟାଣି ଚିତ୍ର ସହ ଯୋଡ଼ ।
ଯେପରି –

| | |
|---|---|
| | ମୟୂର |
| | କାଉ |
| | ହଂସ |
| | ଶୁଆ |
| | ବଗ |
| | ପାରା |
| | ଘରଚଟିଆ |
| | ପେଚା |
| | କୋଇଲି |

୨. କହ ଓ ଲେଖ ।

(କ) କେଉଁ କେଉଁ ପକ୍ଷୀର ରଙ୍ଗ କଳା ?

(ଖ) କେଉଁ କେଉଁ ପକ୍ଷୀର ରଙ୍ଗ ଶାଗୁଆ ?

(ଗ) କେଉଁ କେଉଁ ପକ୍ଷୀର ରଙ୍ଗ ଧଳା ?

୩. ଗୋଲ ଭିତରେ ଥିବା ପକ୍ଷୀଗୁଡ଼ିକ ଭିତରୁ କିଏ ଘରେ ଓ କିଏ ବାହାରେ ରହନ୍ତି, ଚିତ୍ରରେ ଦେଖାଇଲା ଭଳି ଗାର ଦିଅ ।




୪. ଉପରେ ଗୋଲ ଭିତରେ ଥିବା ପକ୍ଷୀମାନଙ୍କର ନାମ ଲେଖ ।

୫. କିଏ କେମିତି ରାବେ—ଲେଖ ।

| | | | |
|---|---|---|---|
| କିଚିରି ମିଚିରି | | କା କା | |
| କୁହୁ କୁହୁ | | ଘୁମୁ ଘୁମୁ | |

୬. ବିନ୍ଦୁ ଭିତରେ କିଏ ଲୁଚିଛି ଖୋଜ ଓ ରଙ୍ଗ ଦିଅ ।



**କ'ଣ ଶିଖିବେ**

ଭାଷା
- ଧନ୍ଦା ବୁଝିବେ ।
- ଅଙ୍ଗଭଙ୍ଗୀ ସହ ଆବୃତ୍ତି କରିବେ ।
- ଭାବ ଲିଖନ ବା କହିପାରିବେ ।

ପରିବେଶ
- ବିଭିନ୍ନ ପକ୍ଷୀଙ୍କୁ ଚିହ୍ନିବେ ।

**ସୂଚନା**

- ପାଠ୍ୟ ଧନ୍ଦାରେ ଥିବା ପକ୍ଷୀମାନଙ୍କର ନାମ ପିଲାମାନଙ୍କ ଦ୍ୱାରା ଚିହ୍ନାଇବେ ।
- ଆଞ୍ଚଳିକ ପକ୍ଷୀମାନଙ୍କର ରଙ୍ଗ, ଗଠନ,ସ୍ୱର ବିଷୟରେ ପିଲାମାନଙ୍କୁ ଜଣାଇବେ ।
- ପଶୁପକ୍ଷୀ ସଂପର୍କିତ ଧନ୍ଦାକରିବେ ।

**ପ୍ରସ୍ତୁତି**

ଫୁର୍ ଖେଳ-

ପିଲାମାନେ ଗୋଲେଇରେ ଛିଡ଼ା ହେବେ । ଶିକ୍ଷକ ମଝିରେ ରହିବେ । ସୂଚନା ଦେବେ- ପିଲାମାନେ କାନ୍ଧ ଉପରେ ହାତ ରଖିବେ । ଶିକ୍ଷକ ଚଢ଼େଇ ନାମ କହିଲା ପରେ ପିଲାମାନେ ହାତ ଟେକି ଫୁର୍ କହିବେ । ଯିଏ କାମଟି ଠିକ୍ ଭାବରେ କରି ପାରିବ ନାହିଁ ,ସିଏ ମଝିକୁ ଆସି ଖେଳ ପରିଚାଳନା କରିବ ।

ଧନ୍ଦା ଖେଳ - ପିଲାମାନେ ଦଳରେ ବିଭକ୍ତ ହେବେ । ଶିକ୍ଷକ ବିଭିନ୍ନ ଅଞ୍ଚଳ ଭିତ୍ତିକ ଧନ୍ଦା କହିବେ । ''ମାମୁଁ ଘରେ ଗୋଠେ ଗାଈ, ରାତି ପାହିଲେ ଗୋଟେ ନାହିଁ'' ତା'ର ଆଲୋଚନା-

**ଦଳଗତ କାର୍ଯ୍ୟ**

- କହି ପାରିବ କି ? (ବିଭିନ୍ନ ପ୍ରକାରର ପକ୍ଷୀର ଅଂଶଗୁଡ଼ିକ ଚିତ୍ରରେ ଥିବ)
- ପିଲାମାନେ ଦଳରେ ବସିବେ । ଗୋଟିଏ ଦଳ ପକ୍ଷୀର ଯେ କୌଣସି ଅଂଶ ଦେଖାଇଲେ ଅନ୍ୟ ଦଳ ସେ କେଉଁ ପକ୍ଷୀର ଅଂଶ କହିବେ । ଦଳଗତ ପ୍ରତିଯୋଗିତା ।

- ଚିତ୍ର ସହ ଶବ୍ଦକୁ ନେଇ ବାକ୍ୟ ଗଢ଼ ।

ଅନ୍ୟ କାର୍ଯ୍ୟ - ବିନ୍ଦୁ ଯୋଡ଼ (ପିଲାମାନେ ବିନ୍ଦୁଯୋଡ଼ି ଚିତ୍ର କରିବେ ।)

ଉପରୁ ପଡ଼ିଲା ପିଲାଟିଏ
ତା'ର ମୁଣ୍ଡରେ ଟୋପିଟିଏ - (ତାଳ)

- ପିଲାମାନେ ଉତ୍ତରଟିକୁ ଦଳରେ ଆଲୋଚନା କରିବେ । ଏହିପରି ବିଭିନ୍ନ ଧନ୍ଦା (ସ୍ଥାନୀୟ ଭାଷାରେ) ଶିକ୍ଷଣ କାର୍ଯ୍ୟ ମାଧ୍ୟମରେ ଉପସ୍ଥାପନ କରିବେ ।

କିଏ ଉଠାଇଲା

| ପିଲାମାନେ ଦୁଇଦଳ ହୋଇ ମୁହାଁ ମୁହିଁ ଠିଆ ହେବେ । ପ୍ରଥମ ଦଳ "ଆମେ ତ ଶୋଇଥିଲୁ , ଆମକୁ କାଉ ଉଠାଇଲା ।" ଏଭଳି କହି କହି ଦ୍ୱିତୀୟ ଦଳ ଆଡ଼କୁ ଯିବେ । ଦ୍ୱିତୀୟ ଦଳ ସାଙ୍ଗେ ସାଙ୍ଗେ "କା କା" ଶବ୍ଦ କରି ପ୍ରଥମ ଦଳ ଆଡ଼କୁ ଆସିବେ । ପ୍ରଥମ ଦଳ ସାଙ୍ଗେ ସାଙ୍ଗେ ଅନ୍ୟ କେଉଁ ପଶୁ ପକ୍ଷୀର ନାମ କହି ପୁଣି ଥରେ ଯିବେ । ଏ ଭଳି ଖେଳଟି ଚାଲିବ । |
|---|

| ଉପକରଣ- | ପଶୁ ପକ୍ଷୀଙ୍କ ଚିତ୍ରକାର୍ଡ଼, ପକ୍ଷୀର ଘର, ଅଣ୍ଡର ଚିତ୍ର |
|---|---|

# ପ୍ରଥମ ଏକକ ପରୀକ୍ଷଣ

ପାଠ-୩

# ଅମୂଲ୍ୟର ହଟହଟା

ସମୟ - ୧୬ ପିରିୟଡ୍

ନଈକୂଳରେ ଆମ୍ବଗଛଟିଏ । ଗଛରେ ମାଙ୍କଡ଼ଟିଏ ରହୁଥାଏ । ଗଛମୂଳେ ଗାତ କରି ରହୁଥାଏ ଗୋଟିଏ କଙ୍କଡ଼ା । ମାଙ୍କଡ଼ ଓ କଙ୍କଡ଼ା ସଙ୍ଗାତ ବସିଥାନ୍ତି । ବିପଦ ଆପଦରେ ଦୁହେଁ ଦୁହିଙ୍କୁ ସାହାଯ୍ୟ କରନ୍ତି ।





ଦିନେ ଅମୂଲ୍ୟ ଆମ୍ବ ଚୋରାଇବ ବୋଲି ଗଛକୁ ଚଢୁଥିଲା । କଙ୍କଡ଼ା ଦେଖିପାରି ରୁଟ୍‌କିନା ତା' ପାଦକୁ କାମୁଡ଼ି ଦେଲା । ଅମୂଲ୍ୟ ଆମ୍ବ ଖାଇ ନପାରି ଫେରିଗଲା । ହାଃ ହାଃ ହାଃ... ଦୁଇ ସଙ୍ଗାତ ଖୁସିରେ ହସି ଉଠିଲେ ।

ଅମୂଲ୍ୟ କିଛିଦିନ ପରେ ପୁଣି ଆସିଲା ।



କଙ୍କଡ଼ା ପ୍ରତି ତା'ର ରାଗ ଥାଏ । ସେ ସିଧା କଙ୍କଡ଼ାର ଗାତରେ ଖଣ୍ଡେ କାଠି ପୂରାଇ ବସିଲା । ମାଙ୍କଡ଼ ତାହା ଦେଖି ପାରିଲା । କଞ୍ଚା ଆମ୍ବଟିଏ ଅମୂଲ୍ୟର ମୁଣ୍ଡକୁ ଲକ୍ଷ୍ୟକରି ଫୋପାଡ଼ି ଦେଲା । ଅମୂଲ୍ୟ ଦୌଡ଼ି ପଳାଇଲା ।



ହାଃ... ହାଃ... ହାଃ... ଦୁଇ ସଙ୍ଗାତ ଖୁସିରେ ତାଳିମାରି ନାଚିଲେ ।

## ଅଭ୍ୟାସ

୧. ଲେଖ ।

ଯେପରି — ଲକ୍ଷ୍ୟ ଲକ୍ଷ୍ୟ

| | | | |
|---|---|---|---|
| ଲକ୍ଷ୍ୟ | ଲକ୍ଷ୍ୟ | ଅସହ୍ୟ | ______ |
| ବାଦ୍ୟ | ______ | ସାହାଯ୍ୟ | ______ |
| ଖାଦ୍ୟ | ______ | ଅଭ୍ୟାସ | ______ |
| ଶସ୍ୟ | ______ | ବ୍ୟାୟାମ | ______ |
| ଗଦ୍ୟ | ______ | ସତ୍ୟବାନ | ______ |
| ପଦ୍ୟ | ______ | ବିଦ୍ୟାଳୟ | ______ |
| ସଦ୍ୟ | ______ | ମିଥ୍ୟା | ______ |
| ବୈଦ୍ୟ | ______ | ସତ୍ୟ | ______ |
| ସୈନ୍ୟ | ______ | ଅମୂଲ୍ୟ | ______ |
| ମୂଲ୍ୟ | ______ | ତୁଲ୍ୟ | ______ |

୨. ଚିତ୍ରଦେଖି ପୂରା ନାମଟି ଲେଖ ।



୩. | ବ୍ୟା, ତ୍ୟ, ଲ୍ୟ, ଦ୍ୟ, ନ୍ୟ, ଦ୍ୟା, ଭ୍ୟା, ହ୍ୟ | ବାକ୍ସରୁ ଆଣି ମୋତେ ପୂରଣ କର ।

ସୈ ____   ସ ____

ବା ____   ଅ ____ ସ

ମୂ ____   ଅସ ____

ଉ ____ ନ

୪. ମୋତେ ଗୋଟିଏ ଅକ୍ଷର ଦିଅ ଶବ୍ଦଟିଏ ନିଅ । ଯେପରି-




୫. ମୁଁ କେଉଁଠି ରହେ, ଚିତ୍ର ଦେଖି କହ ।

| | |
|---|---|
| ପକ୍ଷୀ... | ମାଛ... |
| ମହୁମାଛି... | ବେଙ୍ଗ... |
| ଠେକୁଆ... | ବତକ... |
| କାଠହଣା... | ମୂଷା... |
| ବଣି... | କଇଁଛ... |
| ମାଙ୍କଡ଼... | ନେଉଳ... |
| ମାଙ୍କଡ଼ସା.... | ବାଘ... |
| ସାପ... | ଭାଲୁ... |
| ମଣିଷ... | ହରିଣ... |
| ଶୁଆ... | କଙ୍କଡ଼ା... |

୬. କିଏ କେଉଁଠି ରହନ୍ତି ଲେଖ ।

| ଗାତ | ଘର | ପାଣି | ଗଛ | ଗୁମ୍ଫା |
|---|---|---|---|---|
| | | | | |

୭. ଗପ ପଢ଼ି ଲେଖ ।

(କ) ମାଙ୍କଡ଼ କେଉଁଠାରେ ରହୁଥିଲା ?

(ଖ) କିଏ କିଏ ସଙ୍ଗାତ ଥିଲେ ?

(ଗ) ଅମୂଲ୍ୟ ଆମ୍ବ ନଖାଇ ଫେରିଗଲା କାହିଁକି ?

(ଘ) ମାଙ୍କଡ଼ ଅମୂଲ୍ୟ ମୁଣ୍ଡକୁ କଞ୍ଚା ଆମ୍ବ କାହିଁକି ଫୋପାଡ଼ିଲା ?

କ'ଣ ଶିଖିବେ

ଭାଷା ◆ 'ଯ' ଫଳା '୍ୟ' ଚିହ୍ନିବେ, ପଢ଼ିବେ ଓ ଲେଖିବେ ।

ପରିବେଶ ◆ ପ୍ରାଣୀମାନଙ୍କର ବାସଗୃହ ବିଷୟରେ ଜାଣିବେ ।

ସୂଚନା ◆ ଗଳ୍ପରେ ବାକ୍ୟରୁ ଶବ୍ଦ ଓ ଶବ୍ଦରୁ '୍ୟ' ଫଳା ଚିହ୍ନିବେ

◆ ବିଭିନ୍ନ ପ୍ରାଣୀଙ୍କ ବାସଗୃହ ସମ୍ପର୍କରେ ଆଲୋଚନା ଯଥା-

ମାଙ୍କଡ଼- ଗଛ

କଙ୍କଡ଼ା-ଗାତ

ପ୍ରସ୍ତୁତି

ଘର ଜଙ୍ଗଲ ଖେଳ

> ପିଲାମାନେ ଧାଡ଼ିରେ ଛିଡ଼ା ହେବେ । ଶିକ୍ଷକ ସୂଚନା ଦେବେ- ଜଙ୍ଗଲ ଓ ଘରେ ରହୁଥିବା ଜୀବର ନାମ କହିଲେ ଛିଡ଼ା ହୋଇଥିବା ସ୍ଥାନରୁ ଗୋଟିଏ ପାଦ ଆଗକୁ ଓ ଗୋଟିଏ ପାଦ ପଛକୁ ଡେଇଁବେ । ଘରେ ବା ଜଙ୍ଗଲରେ ରହୁ ନଥିବା ଜୀବର ନାମ କହିଲେ ପିଲାମାନେ ହାତ ଦୁଇଟି ଉପରକୁ ଟେକିବେ । ଯିଏ କାମଟି ଠିକ୍ କରି ପାରିବେ ନାହିଁ, ସେ ଖେଳଟି ପରିଚାଳନା କରିବେ ।

ଆମେ କେଉଁଠି ରହୁ

> ଶିକ୍ଷକ ପ୍ରଥମେ ୯ଟି ଗୋଲ୍ ତଳେ କରିବେ । ଶିକ୍ଷକ ଯେ କୌଣସି ପଶୁ ପକ୍ଷୀର ନାମ କହିଲେ, ପିଲାମାନେ ଦୌଡ଼ି ଯାଇ ସେହି ସ୍ଥାନକୁ ଯିବେ ।

ଆମେ ଜାଣିବା

'ମ୍ୱ' ରେ 'ବ' (୍ୱ)ଫଳା ଲାଗିଛି ବୋଲି କୁହାଯାଏ ନାହିଁ । ଯେହେତୁ ମ+ବ = 'ମ୍ୱ' ଏହା ଏକ ଯୁକ୍ତ ବର୍ଣ୍ଣ ଅଟେ । 'ଯ' ଫଳା 'ବ' ଫଳା ଦେଖିବାକୁ ଏକାପରି କିନ୍ତୁ 'ବ' ଫଳା (୍ୱ )ଅକ୍ଷରର ତଳେ ରହେ ଓ 'ଯ' ଫଳା (୍ୟ) ଅକ୍ଷରର ଆଗରେ ରହେ । 'ବ' ଫଳା ଲାଗିଥିଲେ ଉଚ୍ଚାରଣ ଶେଷରେ ଓ୍ୱ ର ଉଚ୍ଚାରଣ ଭଳି ଶୁଭେ ।

ଦଳଗତ କାର୍ଯ୍ୟ ଶିକ୍ଷଣ କାର୍ଯ୍ୟ

ବାଦ୍ୟ ଚିତ୍ର ବ୍ୟାୟାମ କରୁଥିବାର ଚିତ୍ର, ସୈନ୍ୟ ଚିତ୍ର , ବିଦ୍ୟାଳୟ ଚିତ୍ର ଶିକ୍ଷକ ପିଲାମାନଙ୍କୁ ଦେଖାଇବେ । ପ୍ରଥମେ ପିଲାମାନେ ଚିତ୍ରକୁ ଦେଖି କହିବେ । ଚିତ୍ର ସହ ଶବ୍ଦ ଲେଖାଥିବା କାର୍ଡ଼କୁ ଦେଖି କହିବେ । ଦଳରେ ଚିତ୍ର କାର୍ଡ଼ ଓ ଶବ୍ଦ କାର୍ଡ଼କୁ ଯୋଡ଼ିବାକୁ କହିବେ ।

ତା'ପରେ ପଢ଼ିବେ ଓ ଲେଖିବେ ।

ପ୍ରକଳ୍ପ

ତୁମେ ତୁମ ଗାଁର ସମସ୍ତ ଘର ବୁଲି ଗୃହପାଳିତ ପଶୁପକ୍ଷୀଙ୍କର ଏକ ତାଲିକା କର ।

ଉପକରଣ - ଗଛ, ମାଙ୍କଡ଼, କଙ୍କଡ଼ା, ପିଲାର ଚିତ୍ର

ଶିକ୍ଷକଙ୍କ କାମ

ଗପଟିକୁ ବର୍ଣ୍ଣନା କରିବେ ।

ଗପ ମଝିରେ ପ୍ରଶ୍ନ ପଚାରିବେ ।

ଫଳା ଶବ୍ଦକୁ କଳାପଟାରେ ଲେଖିବେ ।

ଜଳ ଡାଳ
ସ୍ଥଳ ଘର
ଗୁମ୍ଫା ଗାତ
ହୁଙ୍କା
ଜଙ୍ଗଲ ଗଛ

ସମୟ - ୨୦ ପିରିୟଡ୍

# କ୍ରିକେଟ୍ ଖେଳ

ବଣ ଭିତରେ ବିଦ୍ୟାଳୟଟିଏ । ଦିନେ ବିଦ୍ୟାଳୟ ପଡ଼ିଆରେ ଠେକୁଆ ଓ ବିଲୁଆଙ୍କ ମଧ୍ୟରେ କ୍ରିକେଟ ଖେଳ ହେଲା। ପଡ଼ିଆର ପୂର୍ବ ଦିଗରେ ସବୁଜ ବିଲଟିଏ । ତାକୁ ଲାଗି ଜଟିଆ ପାହାଡ଼ । ପାହାଡ଼ ଉପରେ ଭାଲୁ, ହରିଣଛୁଆମାନେ ଖେଳ ଦେଖିବାକୁ ବସିଥାନ୍ତି । ଖେଳ ଖେଳିବା ପାଇଁ ନାଗବଣରୁ ଠେକୁଆମାନେ ସ୍କୁଟର୍‌ରେ ଆସିଲେ । ଆସିବା ବାଟରେ ସେମାନେ ଏକ ବଡ଼ ପର୍ବତ ଦେଖିଲେ । ପର୍ବତ ଦେହରୁ ସରୁ ଝରଣାଟିଏ ଝରି ଆସୁଥାଏ । କିଛି ସମୟ ପରେ ନଇ ପାରି ହୋଇ ସିଂହ ରଜା ଆସିଲେ ।



ଖେଳ ଆରମ୍ଭ ହେଲା । କିଛି ସମୟ ଖେଳିଲା ପରେ ବିରତି ହେଲା । ଖେଳାଳିମାନେ ବିସ୍କୁଟ ଖାଇଲେ ଓ ସର୍ବତ ପିଇଲେ । ପୁଣିଥରେ ଖେଳ ଆରମ୍ଭ ହେଲା । ହଠାତ୍ ଠେକୁଆର ଛକା ମାଡ଼ରେ ବଲ୍‌ଟି ଯାଇ ବିଲରେ ପଡ଼ିଲା । ସେମାନେ ବିଲକୁ ଯାଇ ବଲ୍ ଖୋଜିଲେ । ହେଲେ, ଅଚାନକ ଏକ ଶବ୍ଦ ଶୁଣି ପୋଖରୀ ଆଡ଼େ ଧାଇଁଲେ । ଦେଖିଲେ ଠେକୁଆଟିଏ ପାଣିରେ ଭାସୁଛି । ସଙ୍ଗେ ସଙ୍ଗେ ହଂସ ଯାଇ ଠେକୁଆକୁ ପିଠିରେ ବସାଇ ନେଇ ଆସିଲା । ପୁଣି ଖେଳ ଚାଲିଲା । ଖେଳରେ ଠେକୁଆମାନେ ଜିତିଲେ । ସିଂହରାଜାଙ୍କଠାରୁ ପୁରସ୍କାର ପାଇ ନମସ୍କାର କଲେ । ବିଦ୍ୟାଳୟର ପ୍ରଧାନ ଶିକ୍ଷକ ହରିଣ ସମସ୍ତଙ୍କୁ ଧନ୍ୟବାଦ ଦେଲେ । ପରିବେଶକୁ ସଫା ରଖିବା ଓ ପାଠପଢ଼ି ଭଲ କାମ କରିବାକୁ ଉପଦେଶ ଦେଲେ । ସଭା ଭଙ୍ଗକରି ନିଜ ନିଜ ଘରକୁ ଫେରିଲେ ।

## ଅଭ୍ୟାସ

୧. ପଢ଼ ଓ ଲେଖ ।

ପୁରସ୍କାର, ବିସ୍କୁଟ, ତିରସ୍କାର, ଆସ୍କା, ସ୍କେଲ, ସ୍କୁଟର ।

| | | | | | |
|---|---|---|---|---|---|
| | | | | | |

୨. ଚିତ୍ର ଦେଖି ଯୋଡ଼ ।

ଯେପରି-

ସ୍କେଲ



ସ୍କୁଲ



ନମସ୍କାର



ବିସ୍କୁଟ



୩. ଚିତ୍ରକୁ ଦେଖି ଲେଖ ।

ବିସ୍କୁଟ

ସ୍କେଲ

ସ୍କୁଲ



ବି___ଟ

___ଲ

___ଲ

୪. ତୁମ ବିଦ୍ୟାଳୟରେ କେଉଁ କେଉଁ ଖେଳ ହୁଏ ତାହାର ଏକ ତାଲିକା କର ।

______ ______ ______

______ ______ ______

୫. ଗପଟି ପଢ଼, ବୁଝ ଓ ଲେଖ ।

(କ) ବିଲକୁ ଲାଗି କ'ଣ ଅଛି ?

(ଖ) ଠେକୁଆର ଛକା ମାଡ଼ରେ ବଲ୍‌ଟି କେଉଁଠି ପଡ଼ିଲା ?

୬. କେଉଁଠୁ ପାଉ, ଲେଖ ।

ଯେପରି ମାଛ - ପୋଖରୀ

କାଠ - ______

ଧାନ - ______

ଝୁଣା - ______

୭. ମୋତେ, ମୋ ଜାଗାରେ ରଖ ।

| | |
|---|---|
| | ଖେଳ ପଡ଼ିଆ |
| | ନଦୀ |
| | ଜଙ୍ଗଲ |
| | ଚାଷଜମି |
| | ଘାସ ପଡ଼ିଆ |

୮. ତୁମ ଗାଁର ଚାରିପାଖରେ କ'ଣ କ'ଣ ଅଛି ? ତାର ଏକ ଚିତ୍ର ଅଙ୍କନ କରି, ରଙ୍ଗ ଦିଅ ।

ক'ଣ ଶିଖିବେ

ଭାଷା ◆ 'ସ୍କ' '`' ରେଫ୍‌କୁ ଚିହ୍ନିବେ ।

ପରିବେଶ ◆ ସ୍ଥାନୀୟ ଭୂମିରୂପ ଯଥା: ପଡ଼ିଆ, ବିଲ, ବଣ, ପାହାଡ଼, ନଈ, ଝରଣା, ପୋଖରୀକୁ ଚିହ୍ନିବେ ।

ସୂଚନା

◆ 'ସ୍କ' ଓ (ରେଫ୍) '`' ବାରମ୍ବାର ବ୍ୟବହାର ହୋଇଛି ।

◆ ଚିତ୍ରରୁ ଶବ୍ଦ ଓ ଶବ୍ଦରୁ ଯୁକ୍ତାକ୍ଷର ଚିହ୍ନଟ ।

ପ୍ରସ୍ତୁତି

◆ କ୍ରିକେଟ୍ ଖେଳ ଉପରେ କଥୋପକଥନ ମାଧ୍ୟମରେ ପଢ଼ାକାର୍ଯ୍ୟ ଆରମ୍ଭ କରିବା ପାଇଁ ପ୍ରସ୍ତୁତ ହୁଅନ୍ତୁ ।

◆ କ୍ରିକେଟ୍ ଖେଳ ବିଷୟରେ ବିଭିନ୍ନ ତଥ୍ୟ ସଂଗ୍ରହ କରନ୍ତୁ ।

| ଶିକ୍ଷକ କହିବେ | ପିଲା କହିବେ |
|---|---|
| ଝରଣା | ଝରଝର |
| ନଦୀ | କୁଳୁକୁଳୁ |
| ପତର ପଡ଼ିଲେ | ......... |
| ଚଢ଼େଇ ଉଡ଼େ | ........ |

ସେହିପରି ଶିକ୍ଷକ ଆଉ କେତୋଟି ଉଦାହରଣ ଦେବେ ।

ପିଲାଙ୍କ କାମ

◆ ସ୍କୁଲ ପଡ଼ିଆରେ ଠିଆ ହେଲେ ଚାରିପାଖରେ କ'ଣ କ'ଣ ଦେଖିବେ, ଚିନ୍ତା କରି କହିବେ ଓ ଲେଖିବେ ।

ଦଳଗତ କାର୍ଯ୍ୟ

କ୍ରିକେଟ୍ ଖେଳ

ଦୁଇଦଳ ହୋଇ ପିଲା ବସିବେ । ଗୋଟିଏ ଡାଇସ୍‌ରେ ୧,୨,୪,୬ ନମ୍ବର No Ball, Wide Ball ଲେଖାଥିବ । ତାକୁ ପକାଇ ପିଲା ଖେଳିବେ । ୧ ନମ୍ବର ଓ Wide Ball ପଡ଼ିଲେ ଦଳ ଶିଖିଥିବା ଯୁକ୍ତାକ୍ଷର ବା ଗୋଟିଏ ଅକ୍ଷର ବିଶିଷ୍ଟ ଶବ୍ଦ କହିବେ । ୨,୪ ଓ ୬ ପଡ଼ିଲେ ଯଥାକ୍ରମେ ଦୁଇ ଅକ୍ଷର , ଚାରି ଅକ୍ଷର ଓ ଛଅ ଅକ୍ଷର ବିଶିଷ୍ଟ ଶବ୍ଦ କହିବେ । No Ball ପଡ଼ିଲେ କିଛି କହିବେ ନାହିଁ । ଯେଉଁ ଦଳ ଶବ୍ଦଟି କହିବେ ଅନ୍ୟଦଳ ତାହା ସାରଣୀରେ ଲେଖିବେ ।

ଦଳର ନାମ

| ୧ | ୨ | ୪ | ୬ | No Ball | Wide Ball |
|---|---|---|---|---|---|

ବ୍ୟକ୍ତିଗତ କାର୍ଯ୍ୟ

ପ୍ରଶ୍ନ

ଯଥା ◆ ଜଙ୍ଗଲ କାଟିଲେ କି କି ଅସୁବିଧା ହୁଏ ?

◆ ଚିତ୍ର ଦେଖି ପାର୍ଥକ୍ୟ ଦର୍ଶାଅ ।

(ପୋଖରୀର ଚିତ୍ର ପିଲାମାନଙ୍କୁ ଦେଖାଇବେ) (ନଦୀର ଚିତ୍ର ପିଲାମାନଙ୍କୁ ଦେଖାଇବା)

**ଅଭ୍ୟାସ**

◆ ପାଠ ଅନୁଯାୟୀ

ପିଲାମାନେ ଛୋଟ ଛୋଟ ଦଳରେ ଭାଗ ହୋଇ ଦୁଇଟି ଦଳ ମୁହାଁମୁହିଁ ହୋଇ ବସିବେ ଓ ମଝିରେ ଏକ ପୋଲ ରଖିବେ । ଉଭୟ ଦଳ ଗୋଟିଏ ଲେଖାଏଁ ବାଟି ରଖିଥିବେ । ପାଳି କରି ଏପଟରୁ ସେପଟ ବଲ୍ ଗଡ଼ାଇବେ । ବଲ୍ ଯେଉଁ ପୋଲ ତଳେ ଗଳିବ ସେହି ପୋଲ ଉପରେ ଥିବା ଅକ୍ଷରକୁ ନେଇ ଶବ୍ଦଟିଏ ଆଉ ଦଳ କହିବେ ଓ ଲେଖିବେ ।

(ପୋଲଟି କାଗଜ ପଟାରେ ତିଆରି ହେବ, ବିଭିନ୍ନ ଯୁକ୍ତାକ୍ଷର ଲେଖାଯିବ ।)

**ଅନ୍ୟ କାର୍ଯ୍ୟ**

◆ ନଈ, ପୋଖରୀ, ବିଲ, ଜଙ୍ଗଲ....... ଆଉ କେଉଁଠି ଦେଖିଛନ୍ତି, ତାଲିକା କରିବେ ।

**ପ୍ରକଳ୍ପ କାର୍ଯ୍ୟ**

◆ ବିଭିନ୍ନ ଶିଶୁ ଗୀତ ସଂଗ୍ରହ କରିବେ ଓ ତାହାକୁ ଟିପାଖାତାରେ ଲେଖି ରଖିବେ ।

**ଉପକରଣ- 'ଙ୍କ' ( ଂ ) ଯୁକ୍ତ ଶବ୍ଦ କାର୍ଡ଼ ଏବଂ ଚିତ୍ରକାର୍ଡ଼**

## ପାଠ-୪

# ଗରମ ଗରମ ପୁରି

ସମୟ - ୧୦ ପିରିୟଡ୍

ଗରମ ଗରମ ପୁରି
ଆରିସା, କାକରା, କ୍ଷୀରୀ,
ମା' ବାଢ଼ିଦେଲେ ଆରାମରେ ଖାଉ
ଭାତ,ଡାଲି, ତରକାରୀ ।



ଟଟକା ଟଟକା ଫଳ
ଗୁଡ଼ି,ଅଣ୍ଡା, କନ୍ଦମୂଳ,
ଦେହ ପାଇଁ ବଡ଼ ଉପକାରୀ ବୋଲି
ସାଥେ ପିଇଥାଉ କ୍ଷୀର ।



ପିମ୍ପୁଡ଼ି ହେଉକି ହାତୀ
ପଶୁପକ୍ଷୀ ନାନାଜାତି,
ସରବେ ନିଜର ଖାଇବା ଦରବ
ଖାଇଥାନ୍ତି ନିତି ନିତି ।



ଖାଇଲେ ହୁଅଇ ବଳ
ନ ଖାଇଲେ ଦୁରୁବଳ,
ଅବଶ ଦେହକୁ ରୋଗ, ଭୋକ, ଦୁଃଖ
କରିଥାନ୍ତି କଲବଲ ।



ଯତନ କରି ଖାଇବା
ଟଟକା ପନିପରିବା,
ମାଛ,ମାଂସ ସାଥେ ଘିଅ, ମହୁ, ଦହି
ନୀରୋଗ ଆମେ ରହିବା ।

## ଅଭ୍ୟାସ

୧. ଚିତ୍ର ଦେଖି କହ ଓ ଲେଖ ।



୨. ତୁମେ ଆଜି କ'ଣ ଖାଇଛ ଲେଖ ।

________
________

୩. କହ ଓ ଲେଖ ।
ଖାଇଲେ କ'ଣ ହେବ ?

________________

୪. ନ ଖାଇଲେ କ'ଣ ହେବ ?

________________

୫. ଆସ, କିଛି ଶବ୍ଦ ଲେଖିବା ।
ଯେପରି - ସଳସଳ ______ ______ ______
______ ______ ______ ______

୬. ତୁମେ ଏମାନଙ୍କୁ କ'ଣ କହ, ତାହା ଲେଖ ।



୭. ତଳେ ଥିବା ଗୋଲ ମଧ୍ୟରେ ପାଞ୍ଚଟି ପତ୍ର ଅଠା ଲଗାଇ ସଜାଅ ।



**କ'ଣ ଶିଖିବେ**

ଭାଷା
- ଗୀତ ଆବୃତ୍ତି କରିବେ ।
- ଚିତ୍ର ଅଧ୍ୟୟନ କରିବେ ।
- ଶବ୍ଦ ନକଲ କରି ଲେଖି ପାରିବେ ।

ପରିବେଶ
- ଶରୀର ପାଇଁ ବିଭିନ୍ନ ଖାଦ୍ୟର ଆବଶ୍ୟକତାକୁ ଜାଣିବେ ।
- ଖାଦ୍ୟର ପ୍ରକାର ଭେଦ ବିଷୟରେ ଜାଣିବେ ।

**ସୂଚନା**
- ଗୀତ ଓ ଚିତ୍ର ମାଧ୍ୟମରେ ବିଭିନ୍ନ ପ୍ରକାର ଖାଦ୍ୟର ଆଲୋଚନା କରିବାର ସୁଯୋଗ ସୃଷ୍ଟି କରାଯାଇଛି ।
- ପ୍ରାଣୀମାନଙ୍କର ଖାଦ୍ୟ ବିଷୟରେ ଆଲୋଚନା କରନ୍ତୁ ।

**ପ୍ରସ୍ତୁତି**

ଯାଦୁମୁଣି

ବିଭିନ୍ନ ପ୍ରକାର ପନିପରିବା ଗୋଟିଏ ମୁଣିରେ ରଖାହେବ । ପିଲାମାନେ ମୁଣି ଭିତରେ ହାତ ପୁରାଇ ଛୁଇଁବେ ଓ କହିବେ ତାହା କେଉଁ ପରିବା ।

ପ୍ରଶ୍ନଖେଳ
- ଶିକ୍ଷକ ପିଲାମାନଙ୍କୁ ୨ ଦଳ କରି ନିମ୍ନ ଲିଖିତ ପ୍ରଶ୍ନ ପଚାରିବେ ।
- ମାଆ କ'ଣ କ'ଣ ଖାଇବାକୁ ଦିଅନ୍ତି ? କାହିଁକି ଦିଅନ୍ତି ?
- ନ ଖାଇଲେ କ'ଣ ହେବ ?
- କ'ଣ ଖାଇଲେ ନୀରୋଗ ରହିବା ?
- ଆମ ପରି ପଶୁପକ୍ଷୀ ମଧ୍ୟ ଖାଆନ୍ତି କି ?
- କିଏ କ'ଣ ଖାଏ ?

**ଆମେ ଜାଣିବା**
- ଠିକ୍ ସମୟରେ ଖାଇଲେ ଦେହ ସୁସ୍ଥ ରହେ ।
- ସବୁ ପ୍ରକାର ଖାଦ୍ୟ ଖାଇବା ଦ୍ୱାରା, ଖାଦ୍ୟାଭାବ ଜନିତ ରୋଗ ହୁଏନି ।

**ଦଳଗତ କାର୍ଯ୍ୟ**

ଫଳ ଓ ପରିବା

ବିଭିନ୍ନ ପ୍ରକାର ଫଳ ଓ ପରିବା ଚିତ୍ରର ଫ୍ଲାସକାର୍ଡ଼କୁ ପିଲାମାନେ ବର୍ଗୀକରଣ କରିବେ

ଡାଇସ୍ ଖେଳ

ନିରାମିଷ ଓ ଆମିଷ ଖାଦ୍ୟ ଲେଖାଥିବା ଡାଇସ ଦୁଇ ଦଳ ମଧ୍ୟରେ ଖେଳିବେ । ଗୋଟିଏ ଦଳ ଡାଇସ ପକାଇଲେ ଉପରେ ଯାହା ପଡ଼ିବ, ଅନ୍ୟ ଦଳ ସେହି ପ୍ରକାର ଖାଦ୍ୟର ନାମ କହିବେ ।

**ଅନ୍ୟ କାର୍ଯ୍ୟ** ପିଲାମାନେ ବିଭିନ୍ନ ପ୍ରକାର ଖାଦ୍ୟର ତାଲିକା କରିବେ ।

ସାରଣୀ

| ମିଠାଖାଦ୍ୟ | ଖଟାଖାଦ୍ୟ | ପିତାଖାଦ୍ୟ |
|---|---|---|
| | | |

**ପ୍ରକଳ୍ପ କାର୍ଯ୍ୟ**
- ଘରେ ଫଳୁଥିବା ପନିପରିବାର ଏକ ତାଲିକା ପ୍ରସ୍ତୁତ କର । ମାଟିରେ ପନିପରିବା ତିଆରି ଚିତ୍ରକୁ ପ୍ରାକୃତିକ ଜିନିଷ ସାହାଯ୍ୟରେ ରଙ୍ଗ ଦେବେ, ଯଥା - ପତ୍ର- ଶାଗୁଆ

କାର୍ଡ଼ ଖେଳ

ଦଳ ଦଳ ମଧ୍ୟରେ ପ୍ରତିଯୋଗିତା ହେବ । ପ୍ରଶ୍ନ କାର୍ଡ଼ ଗୁଡ଼ିକ ମଝିରେ ରଖିବେ । ଗୋଟିଏ ଦଳ ପ୍ରଥମେ କାର୍ଡ଼ଟିଏ ଉଠାଇବେ । ଅନ୍ୟ ଦଳ ଉତ୍ତର ଦେବେ । ଯେଉଁ ଦଳ କହି ପାରିବେ ନାହିଁ ସେ ଦଳ ପଏଣ୍ଟ ପାଇବେ ନାହିଁ ।

ଖାଦ୍ୟଖେଳ

- ଦଳେ ଜୀବର ନାମ କହିଲେ, ଅନ୍ୟଦଳ ଖାଦ୍ୟର ନାମ କହିବେ ।

ଉପକରଣ –

ମୁଣି, ପନିପରିବା, ଫ୍ଲାସ କାର୍ଡ଼ରେ ବିଭିନ୍ନ ଜୀବର ନାମ ଲେଖା ହୋଇଥିବ ।

# ଦ୍ୱିତୀୟ ଏକକ ପରୀକ୍ଷଣ

পাঠ-৬

ସମୟ - ୧୦ ପିରିୟଡ୍

# ମିନି ଖୁଁ ଖୁଁ ମାଛି ଭୁଁ ଭୁଁ



ପୁଷି ମାଉସୀର ଭାରି ଚିନ୍ତା । ସାନ ଝିଅ ମିନିକୁ ଏକାଥରକେ ଜ୍ୱର ଓ ଝାଡ଼ା ରୋଗ ଧରିଛି । ମଝିରେ ମଝିରେ ବାନ୍ତି ବି ହେଉଛି । ମିନିର ସ୍ୱଭାବ ହିଁ ଏମିତି । କାହାର କଥା ଶୁଣିବନି । ଏଣୁ ତେଣୁ ଖାଇବ ।

ହନୁ ଡାକ୍ତର ଉପରେ ପୁଷି ମାଉସୀର ଭାରି ବିଶ୍ୱାସ । କେତେବେଳୁ ଖବର ପଠେଇଲେଣି । ତାଙ୍କର ଦେଖାନାହିଁ । ହେଇତ, ଡାକ୍ତର ଆସିଲେଣି ।

ହନୁ ଡାକ୍ତର ମିନିକୁ ପରୀକ୍ଷା କଲେ । ତା'ର ନିଃଶ୍ୱାସ ପ୍ରଶ୍ୱାସ ପ୍ରଖର ହେଉଥାଏ । ମିଁ ମିଁ ସ୍ୱରରେ କଥା କହୁଥାଏ । ଡାକ୍ତର ତା'ର ରକ୍ତ ପରୀକ୍ଷା କରିବାକୁ କହିଲେ ।



ପୁଷି ମାଉସୀ ଡାକ୍ତରଙ୍କୁ ବସେଇ କପେ ଚା' ଦେଲା । ଚା' ପିଉ ପିଉ ହନୁ ଡାକ୍ତର କହିଲେ, ଖରାପ ଖାଦ୍ୟ ଯୋଗୁଁ ମିନିକୁ ଏପରି ହୋଇଛି । ଅପରିଷ୍କାର ଖାଦ୍ୟ ଓ ଜଳ କିପରି ସ୍ୱାସ୍ଥ୍ୟ ପାଇଁ କ୍ଷତିକାରକ ବୁଝାଇ ଦେଲେ । ମାଉସୀର ବଡ଼ ଦୁଇ ଝିଅ ବିନି ଓ ରାଣୀ ପାଖରେ ବସି ସବୁ ଶୁଣୁଥିଲେ । ସେମାନେ ସଜାଗ ହୋଇ ସଙ୍ଗେ ସଙ୍ଗେ କାମକୁ ବାହାରିଲେ ।

ହେଇ,ହେଇ- ମାଛି, ମାଛି । ଡାକ୍ତର ମଉସା କହୁଥିଲେ, ମାଛି ମାନେ ନାଳ, ମଳ, ଛେପ, ଖଙ୍କାର ଆଦିରେ ବସନ୍ତି । ସେଇଠୁ ରୋଗ ଜୀବାଣୁ ବହିଆଣି ଆମ ଖାଇବା ଜିନିଷରେ ଛାଡ଼ି ଦିଅନ୍ତି । ଚାଲ ତାକୁ ଘଉଡ଼ାଇ ଦେବା ।





ଖାଲି ମାଛି ନୁହେଁ, ଧୂଳି, ବାଲି ବି ଖାଇବା ଜିନିଷକୁ ଅପରିଷ୍କାର କରେ । ଡାକ୍ତର ମଉସା କହୁଥିଲେ ଖାଇବା ଜିନିଷକୁ ଘୋଡ଼ାଇ ରଖିବା ଉଚିତ ।

ବାସି ଖାଦ୍ୟ ସ୍ୱାସ୍ଥ୍ୟ ପାଇଁ ଭଲ ନୁହେଁ । ପଚା ପରିବା, ସଢ଼ା ଫଳ, ପଚା ମାଂସ ଓ ପଚା ଅଣ୍ଡା ବି କ୍ଷତି କରେ । ତାକୁ ଫୋପାଡ଼ି ଦେବା । ଡାକ୍ତର ମଉସା କହୁଥିଲେ –ନଦୀ ଓ ପୋଖରୀର ଜଳ ପରିଷ୍କାର ନୁହେଁ । ସେଥିରେ ରୋଗ ଜୀବାଣୁ ଥାଆନ୍ତି । ଅପରିଷ୍କାର ପାଣି ପିଇଲେ ହଇଜା, ନାଳଝାଡ଼ା ଓ ଟାଇଫଏଡ୍ ହୋଇଥାଏ ।



ଆମେ ନଳକୂଅର ପାଣି ବ୍ୟବହାର କରିବା ଉଚିତ । କେହି ତାକୁ ଅପରିଷ୍କାର କରିପାରନ୍ତି ନାହିଁ ।



ଡାକ୍ତର ମଉସା ତାଗିଦ୍ କରୁଥିଲେ- ପାଣି ଫୁଟାଇ ଛାଣିକରି ପିଇବା । ଖାଇବା ଓ ପିଇବା ପାଇଁ ବ୍ୟବହାର ହେଉଥିବା ଜିନିଷପତ୍ରକୁ ସଫା ରଖିବା ।

ପୁଷି ମାଉସୀ ବିନି ଓ ରାଣୀର କାମ ଦେଖି ଖୁବ୍ ଖୁସିହେଲେ ।

# ଅଭ୍ୟାସ

୧. ଲେଖ ।

| | | | | | |
|---|---|---|---|---|---|
| ଜ୍ୱର | ______ | ରକ୍ତ | ______ | ଶୁଷ୍କ | ______ |
| ସ୍ୱର | ______ | ଶକ୍ତ | ______ | କନିଷ୍ଠ | ______ |
| ସ୍ୱଭାବ | ______ | ମୁକ୍ତା | ______ | ପରିଷ୍କାର | ______ |
| ନିଃଶ୍ୱାସ | ______ | ଡାକ୍ତର | ______ | ପୁଷ୍କରିଣୀ | ______ |
| ଶ୍ୱାନ | ______ | ଯୁକ୍ତାକ୍ଷର | ______ | ଆବିଷ୍କାର | ______ |

୨. ବିଶ୍ୱାସ, ବିଦ୍ୱାନ, ସ୍ୱାକ୍ଷର, ଦ୍ୱାର, ରକ୍ତ, ଶୁଷ୍କ, ମୁକ୍ତା, ଶ୍ୱାନ, ଶକ୍ତ, ପୁଷ୍କରିଣୀ, ବିଶ୍ୱ, ଡାକ୍ତର, ଆବିଷ୍କାର, ଅଶ୍ୱ, ନିଃଶ୍ୱାସ, ଯୁକ୍ତି, କନିଷ୍ଠ, ଭକ୍ତି, ସ୍ୱଭାବ ।

| ‘ବ’ ଫଳା ଥିବା ଶବ୍ଦ ଆଣ । | ‘କ୍ତ’ ଅକ୍ଷର ଥିବା ଶବ୍ଦ ଆଣ । | ‘ଷ୍କ’ ଅକ୍ଷର ଥିବା ଶବ୍ଦ ଆଣ । |
|---|---|---|
| | | |

୩. ମୋତେ ସଜାଅ ।

ଯେପରି, ଭାବସ୍ୱ-ସ୍ୱଭାବ,

| | | | | | | | |
|---|---|---|---|---|---|---|---|
| ଶ୍ୱାସପ୍ର | ____ | ନିଃସଶ୍ୱା | ____ | କ୍ଷସ୍ୱାର | ____ | ଯୁକ୍ଷରକ୍ତା | ____ |
| ନଶ୍ୱିଆ | ____ | ଡାରକ୍ତ | ____ | ସଂକ୍ତାଯୁ | ____ | ପୁରିଷ୍କଣୀ | ____ |
| କ୍ତିଶନମା | ____ | ପଷ୍କାରିର | ____ | ବିଷ୍କାରଆ | ____ | | |

୪. ବେଲୁନ ବାଲାଠୁ ଯୋଡ଼ିଏ ଲେଖାଏଁ ବେଲୁନ ନିଅ (ଦୁଇ ପେଛାରୁ ଗୋଟିଏ ଲେଖାଏଁ) ଓ ଶବ୍ଦ ଗଢ଼ ।



୫. ଟୁନିକୁ ଭୋକ ହେଉଛି । ତାର ବାପା କେଉଁଠାକୁ ଖୁଆଇବାକୁ ନେବେ କହ ।



୬. ମାଛି ବସିଥିବା ଖାଦ୍ୟ, ନାଳର ପାଣି, ପୋଖରୀର ପାଣି, ନଳକୂଅର ପାଣି, ଫୁଟାହୋଇ ଛଣା ହୋଇଥିବା ପାଣି, ଖୋଲାରେ ପଡ଼ିଥିବା ଖାଦ୍ୟ ମଧ୍ୟରୁ କେଉଁଟି ପରିଷ୍କାର ଓ ଅପରିଷ୍କାର ଅଲଗା କର ।

| ପରିଷ୍କାର | ଅପରିଷ୍କାର |
|---|---|
| ______ | ______ |
| ______ | ______ |
| ______ | ______ |
| ______ | ______ |
| ______ | ______ |

୭. ମୋ ଆଗରେ ‘ଅ’ ଲଗାଇ ଦେଖ ଓ ନୂଆ ଶବ୍ଦଟିକୁ ଗଢ଼ ଓ ଲେଖ ।

ଯେପରି- ପରିଷ୍କାର- ଅପରିଷ୍କାର

ସୁନ୍ଦର- ______
ବାଟ- ______
ମଣିଷ- ______
ପୂରଣ- ______
ଭାବ- ______

### କ'ଣ ଶିଖିବେ

ଭାଷା ◆ 'ବ' ଫଳା ( ୍ୱ ), କ୍ତ ଓ ସ୍କ ଚିହ୍ନିବେ ।

ପରିବେଶ ◆ ଅପରିଷ୍କାର ଖାଦ୍ୟ ଓ ଜଳ ରୋଗର କାରଣ । ଏହା ଜାଣିବେ ଓ ଏଥିପ୍ରତି ସତର୍କ ହେବେ ।

### ସୂଚନା

ଭାଷା ◆ ଗଳ୍ପର ଶବ୍ଦମାନଙ୍କରୁ 'ବ' ଫଳା, 'କ୍ତ' ଓ 'ସ୍କ' ଚିହ୍ନାଯାଇ ପାରିବ ।

ପରିବେଶ ◆ ଅପରିଷ୍କାର ଖାଦ୍ୟ ଶରୀର ପାଇଁ କ୍ଷତି କାରକ ।

◆ ଅପରିଷ୍କାର ଜଳରୁ ରୋଗ ହୋଇଥାଏ, ଗଳ୍ପରେ ପିଲାଙ୍କୁ ଜଣାଇବାର ସୁଯୋଗ ରହିଛି ।

### ପ୍ରସ୍ତୁତି

(ବହିର ଚିତ୍ରକୁ ଦେଖି) ମାଛି ବସିଥିବା ଅପରିଷ୍କାର ଖାଦ୍ୟର ଚିତ୍ରକୁ ପ୍ରତ୍ୟେକ ପିଲାଙ୍କୁ ଦେଖିବାକୁ କହନ୍ତୁ ।

◆ ଦେଖିଥିବା ଯାନି ଯାତ୍ରା ବିଷୟରେ କହିବା ପାଇଁ ନିର୍ଦ୍ଦେଶ ଦିଅନ୍ତୁ ।

ଶବ୍ଦ କଡ଼ି ◆ ଜଣେ ପିଲା ଅକ୍ଷରଟିଏ କହିବ । ଅନ୍ୟ ଜଣେ ପିଲା ତା' ପଛକୁ ଆଉ ଏକ ଶବ୍ଦ କହିବ ଯେପରି ପ୍ରଥମ ଅକ୍ଷର ସହ ମିଶି ଶବ୍ଦଟିଏ ହେବ । ତୃତୀୟ ପିଲା ପୁଣି ଏକ ଅକ୍ଷର କହିବ ଯେପରି ଦ୍ୱିତୀୟ ଅକ୍ଷର ମିଶି ପୁଣି ଏକ ଶବ୍ଦ ହେବ । ଏହିପରି ଚାଲିବ ।

◆ ଶବ୍ଦ ଦୁଇ ଅକ୍ଷର ବା ତିନି ଅକ୍ଷର ବିଶିଷ୍ଟ ମଧ୍ୟ ହୋଇପାରେ ।




### ଦଳଗତ କାର୍ଯ୍ୟ

କାର୍ଡ଼ଖେଳ

ପିଲାମାନେ ଦଳରେ ବସିବେ । ମଝିରେ ଅକ୍ଷର କାର୍ଡ଼ ଗୁଡ଼ିକ ବିଛାଇ କରି ରଖାଯିବ । ପିଲାମାନେ ତହିଁରୁ କାର୍ଡ଼ ବାଛି ଯୋଡ଼ି ଶବ୍ଦ ଗଢ଼ିବେ । ଶବ୍ଦ କାର୍ଡ଼ରେ ଏପରି ଶବ୍ଦର ଅକ୍ଷର ରହିବ ଯେପରି ତହିଁରେ ଯୁକ୍ତାକ୍ଷର ଯୁକ୍ତ ଶବ୍ଦ ହେଉଥିବ ।

### ଅନ୍ୟକାର୍ଯ୍ୟ

◆ ରନ୍ଧା ଖାଦ୍ୟକୁ ମାଆ କିପରି ସାଇତି ରଖନ୍ତି କହିବେ ।

ଖାଦ୍ୟ ଓ ଜଳ କିପରି ଅପରିଷ୍କାର ହୁଏ ଏହାର କାରଣ ଲେଖିବେ ।

### ପ୍ରକଳ୍ପ କାର୍ଯ୍ୟ

◆ ଆମେ କେଉଁ କେଉଁ ଠାରୁ ଜଳ ପାଉ ଆସ ତାଲିକା କରିବେ ।

### ଉପକରଣ

◆ ଶବ୍ଦ ଫ୍ଲାସ୍ କାର୍ଡ଼ (ରାସ୍ତା, ବସ୍ତା, ପର୍ବତ, ଦର୍ପଣ, ଲେମ୍ବୁ, ଖମ୍ବ, ଆମ୍ବ, ପୁଷ୍କର, ପୁଷ୍କରିଣୀ, ପରିଷ୍କାର, ଶୁଷ୍କ, ସ୍କନ୍ଧ, ରକ୍ତ, ଭକ୍ତ, ଶକ୍ତ, ଶକ୍ତି, ଡାକ୍ତର, ମୁକ୍ତା, ଡାକ୍ତରଖାନା)

ଆସ ରୋଗୀ ଖୋଜିବା

ପିଲାମାନେ ଦଳରେ ବସିବେ । ଜଣେ ଡାକ୍ତର ହୋଇ ବାହାରକୁ ଯିବ । ଅନ୍ୟ ମାନଙ୍କ ମଧ୍ୟରୁ ଜଣେ ରୋଗୀ ହେବ । ରୋଗୀଟି ରୋଗର ଲକ୍ଷଣ ଯଥା -କୁଣ୍ଡେଇବା,କାଶିବା, ବାନ୍ତିକରିବା ଭଳି ଅଭିନୟ କରିବାବେଳେ ଅନ୍ୟମାନେ ତାକୁ ଅନୁକରଣ କରି ସେଭଳି କରୁଥିବେ । ଡାକ୍ତର ମଝିକୁ ଆସି ବୁଲି ବୁଲି ରୋଗୀକୁ ଚିହ୍ନିବେ । ଚିହ୍ନିଲେ ରୋଗୀ ଡାକ୍ତର ହେବ ।
ବି.ଦ୍ର: ନେତା ଖୋଜ ଖେଳ ଭଳି ଖେଳିବେ ।

(କେତେକ ପ୍ରଶ୍ନ ତିଆରିବେ ଯାହାର ଉତ୍ତରରେ 'କ୍ତ' ଓ 'ଷ୍କ' ଶବ୍ଦ ଯୋଗାଇ ଆସୁଥିବ ।

ପ୍ରଶ୍ନ ଖେଳ
- ହାତ କଟିଗଲେ କ'ଣ ବାହାରେ ? [ରକ୍ତ]
- ଖେଳ ପ୍ରତିଯୋଗିତାରେ ଜିତିଲେ କ'ଣ ମିଳେ ? [ପୁରସ୍କାର]
- ଦେହ ତାତିଲେ କି ରୋଗ ହୋଇଛି ବୋଲି କହୁଁ ? [ଜ୍ୱର]

ଆସ ଚିତ୍ରକାର୍ଡ଼ ଦେଖି କହିବା ଯଥା- ଡାକ୍ତର, ସ୍କନ୍ଦ ଭକ୍ତ, ମୁକ୍ତା, ପୁଷ୍କରିଣୀ, ପୁଷ୍କର

ବିଭିନ୍ନ ଶବ୍ଦକୁ କଳାପଟାରେ ଲେଖିବା ଓ ପୂର୍ବ ପାଠ ଭଳି ଅକ୍ଷର ଚିହ୍ନଟ ।

ଯଥା- ପୁଷି ମାଉସୀ ହନୁକୁ କାହିଁକି ଡାକିଲେ ?
- ଡାକ୍ତର ଆସି କ'ଣ କଲେ ?
- ମିନିର ଦେହ କାହିଁକି ଖରାପ ହେଲା ?
- ମାଛି ବସା ଖାଦ୍ୟ ଖାଇଲେ କି ଅସୁବିଧା ହେବ ?

ଦଳଗତ କାର୍ଯ୍ୟ

ପ୍ରଶ୍ନ ଗୁଡ଼ିକର ଦଳଗତ ଆଲୋଚନା କରି ଉତ୍ତର କହିବେ । ଠିକ୍ ଉତ୍ତର ଦେଇଥିବା ଦଳ ନମ୍ବର ପାଇବେ ।

ସମୟ - ୧୦ ପିରିୟଡ୍

ପାଠ-୭

# ଚମ୍ପା ଓ ଚମ୍ପକର ବାହାଘର



ଚମ୍ପାପୁର ଛୋଟ ଗାଁଟିଏ । ପାଖକୁ ଲାଗି ଫୁଲଝରନ୍ ଜଙ୍ଗଲ । ସେ ଜଙ୍ଗଲର ଘୋଡ଼ା ଚମ୍ପକ ସହ ଚମ୍ପାର ବାହାଘର ଠିକ୍ ହେଲା । ଚମ୍ପାର ଘର ନନ୍ଦନକାନନରେ । ବରଯାତ୍ରୀ ଦଳରେ ହରିଣ, ବାଘ, ଠେକୁଆ, ଗଧିଆ ଓ ଭାଲୁ ଆଦି ଆହୁରି ଜୀବଜନ୍ତୁ ବାହାରିଲେ ।

ବସ୍‌ରେ ସମସ୍ତେ ଆସି ଭୁବନେଶ୍ୱରରେ ପହଞ୍ଚିଲେ । ଚମ୍ପକ ବର ବେଶରେ ଆଶ୍ଚର୍ଯ୍ୟ ହୋଇ ଦେଖୁଥାଏ । ଚାରିଆଡ଼େ ଖାଲି କୋଠାଘର । ହେଲେ ତା' ଗାଁରେ ତ ମାଟି ଓ ଚାଳ ଘର ।



ଯଥା ସମୟରେ ବାହାଘର ସରିଲା । ସମସ୍ତେ ଭୋଜି ଖାଇଲେ । ତା'ପରେ ନନ୍ଦନକାନନକୁ ବୁଲି ବାହାରିଲେ । ସେଠାରେ ବାଘ, ସିଂହ ଓ ଭାଲୁମାନଙ୍କର ଗୁମ୍ଫା ଓ ତାରଜାଲି ଦିଆ ଲୁହାର ଘର ଦେଖିଲେ ।

ମାଙ୍କଡ଼ମାନେ ଏ ଡାଳରୁ ସେ ଡାଳକୁ ଲମ୍ଫ ଦେଉଥାଆନ୍ତି । ଛୋଟ ବଡ଼ ସାପ ଗୁଡ଼ିକ ଗାତ ଓ ଗଛ କୋରଡ଼ରେ ରହୁଛନ୍ତି । ମୂଷାମାନେ ମାଟି ଖୋଳୁଥିବାର ଦେଖିଲେ । ବଡ଼ ବଡ଼ ଭାଲୁ ନଖରେ ମାଟି ରାମ୍ପୁଥାନ୍ତି । ସଞ୍ଜବେଳକୁ ସମସ୍ତେ ଘରକୁ ଫେରିଲେ । ବାଟରେ ଭାଲୁ କହିଲା– ନନ୍ଦନକାନନରେ ପଶୁମାନେ କେମିତି ବନ୍ଦୀ ହୋଇ ରହୁଛନ୍ତି ଦେଖିଲତ । ଆମେତ ଫୁଲଝରନ୍ ଜଙ୍ଗଲରେ ସ୍ୱାଧୀନଭାବରେ ରହିଛୁ । ତା' ଆରଦିନ ସକାଳୁ ଚମ୍ପାକୁ ସାଙ୍ଗରେ ନେଇ ନିଜ ଜଙ୍ଗଲକୁ ଫେରି ଆସିଲେ ।

## ଅଭ୍ୟାସ

୧. କହ ଓ ଲେଖ ।

ବରଯାତ୍ରୀ ଦଳରେ କେଉଁମାନେ ଯାଇଥିଲେ ?

୨. ନନ୍ଦନକାନନରେ ସେମାନେ କ'ଣ ସବୁ ଦେଖିଲେ ?

୩. ମିଶୁନଥିବା ଶବ୍ଦ ତଳେ ଗାର ଦିଅ ।

ଯେପରି- କାଗଜ, କଲମ, ଖାତା, ରେଡିଓ ।

-ଗୀତା, ସୀତା, ରାମ, ମିତା ।

-ହରିଣ, ମାଛ, ବାଘ, ଠେକୁଆ ।

-ହାତୀ, ଶାରୀ, ଶୁଆ, କଜଳପାତି ।

-ମାଛ, ବେଙ୍ଗ, ମଗର, ଏଣ୍ଡୁଅ ।

୪. ଚମ୍ପା ଓ ଚମ୍ପକଙ୍କ ବାହାଘର ବିଷୟରେ ଲେଖ ।

________________

________________

________________

________________

________________

________________

________________

୫. ପଠିତାଂଶରେ ଥିବା 'ମ୍ପ' ଅକ୍ଷର ଥିବା ଶବ୍ଦରେ ଗୋଲ ବୁଲାଅ ।



୬. କିଏ କେଉଁଠି ରହିବେ ଗାର ଦେଇ ଚିହ୍ନାଅ ।



୭. ଲେଖ ।

| | | | | | |
|---|---|---|---|---|---|
| ଚମ୍ପା | ____ | ବାମ୍ପୀ | ____ | କମ୍ପାସ | ____ |
| ଡାମ୍ଫଣ | ____ | କମ୍ପନ | ____ | ଗୁମ୍ଫା | ____ |

କୋଠରୀ ମଧ୍ୟରୁ ଦୁଇ ବା ଅଧିକ ଅକ୍ଷରକୁ ନେଇ ଶବ୍ଦ ଗଢ଼ ।

| | | |
|---|---|---|
| ଚ | ଦ | ଡ |
| ସ | ମ୍ପ | କ |
| ମ୍ଫ | ନ | ମ୍ପା |

୮. ଏପରି ବି ଲେଖା ଯାଇପାରେ ।

ଚମ୍ପା- ଚଂପା ଡାମ୍ଫଣ-ଡାଂଫଣ

| | | | | |
|---|---|---|---|---|
| ସେହିପରି- | ଗୁମ୍ଫା | ____ | କମ୍ପାସ | ____ |
| | ବାମ୍ପୀ | ____ | କମ୍ପନ | ____ |

**କ'ଣ ଶିଖିବେ**

ଭାଷା ◆ ଶ୍ମ, ଙ୍ଘ ଆଦି ଯୁକ୍ତାକ୍ଷର ଚିହ୍ନିବେ ଓ ବ୍ୟବହାର କରିବେ ।

ପରିବେଶ ◆ ବିଭିନ୍ନ ପ୍ରାଣୀଙ୍କର ବାସଗୃହ ବିଷୟରେ ଜାଣିବେ ।

**ସୂଚନା**

- ପାଠରେ ଶ୍ମ, ଙ୍ଘ ବ୍ୟତୀତ ଷ୍ଟ ଓ ସ୍ତ ଯୁକ୍ତାକ୍ଷର ମଧ୍ୟ ବ୍ୟବହୃତ କରାଯାଇଛି ।
- ନନ୍ଦନ କାନନ ସଂପର୍କରେ କିଛି ତଥ୍ୟ ଅଛି ।
- ପ୍ରାଣୀ ଓ ମନୁଷ୍ୟ ମାନଙ୍କ ବାସଗୃହର ଆବଶ୍ୟକତା ବର୍ଣ୍ଣନା କରାଯାଇଛି ।
- ସହର ଓ ଗାଆଁର ବାସଗୃହର ତୁଳନା କରିବେ ।
- କେତୋଟି ପ୍ରାଣୀ ବସା ନିଜେ ତିଆରି କରନ୍ତି ଓ କେତେକ ବସା ତିଆରି କରନ୍ତି ନାହିଁ ତାହା ଜାଣିବେ ।

**ପ୍ରସ୍ତୁତି**

ଯୋଡ଼ି ଦେଖ — ଅକ୍ଷର ଓ ଯୁକ୍ତାକ୍ଷରର କଟା ହୋଇଥିବା କାର୍ଡ଼ ଗୁଡ଼ିକୁ ଯୋଡ଼ିବେ ।

ଶବ୍ଦ ଗଠନ — ଅକ୍ଷର ଓ ଯୁକ୍ତାକ୍ଷର କାର୍ଡ଼ ଦିଆଯିବ । ପିଲାମାନେ ଦଳରେ ତାକୁ ଯୋଡ଼ି ଶବ୍ଦ ଗଢ଼ିବେ ।

ପ୍ରଶ୍ନଖେଳ (ଶିକ୍ଷକ ସମସ୍ତ ପିଲାଙ୍କୁ ଦୁଇଦଳରେ ବିଭକ୍ତ କରି ପ୍ରଶ୍ନ ଖେଳ କରାଇବେ ।)

- ବାସଗୃହ କାହିଁକି ଦରକାର ?
- ଦେଖିଥିବା ବସା ଗୁଡ଼ିକର ନାମ ?
- ମନୁଷ୍ୟ କିପରି ବାସଗୃହ ତିଆରି କରେ ?
- ପ୍ରାଣୀମାନେ କିପରି ବସା ତିଆରି କରନ୍ତି ?
- ସହରରୁ ଗାଆଁକୁ ଗଲେ କ'ଣ ଦେଖିବ ?

**ଆମେ ଜାଣିବା**

ନନ୍ଦନ କାନନ- ଭୁବନେଶ୍ୱରଠାରୁ ପ୍ରାୟ ୧୫ କି.ମି. ଦୂରରେ ବାରଙ୍ଗ ଠାରେ ନନ୍ଦନକାନନ ଅବସ୍ଥିତ । ନନ୍ଦନ କାନନରେ ଦେଶ ଭିତର ଓ ବାହାରୁ ଜୀବଜନ୍ତୁ ଆଣି ରଖାଯାଇଛି । ଯଥା- ଧଳାବାଘ, କଙ୍ଗାରୁ, ଯେବ୍ରା, ଓଟପକ୍ଷୀ, ଜଳହସ୍ତୀ, ଗଣ୍ଡାର, ବିଭିନ୍ନ ପ୍ରକାରର ପକ୍ଷୀ ଓ ସରୀସୃପ ଇତ୍ୟାଦି ଓ ସେଠାରେ ମଧ୍ୟ ଏକ ଉଦ୍ଭିଦ ଉଦ୍ୟାନ ଅଛି । ଏହା ଏକ ଦର୍ଶନୀୟ ସ୍ଥାନ ଅଟେ ।

**ଦଳଗତ କାର୍ଯ୍ୟ**

କାର୍ଡ଼ଖେଳ — ପଶୁପକ୍ଷୀଙ୍କ ଚିତ୍ର, ବାସଗୃହର ଚିତ୍ର ଦିଆଯିବ । ପଶୁପକ୍ଷୀମାନଙ୍କ ଚିତ୍ର ସହ ବାସଗୃହ ଯୋଡ଼ିବେ ।

**ପ୍ରକଳ୍ପ କାର୍ଯ୍ୟ**

- ତୁମ ଗ୍ରାମରେ କେତୋଟି ପକ୍କାଘର, ମାଟିଘର ଓ ଛପରଘର ଅଛି ତାହାର ଏକ ତାଲିକା କର ।

ଉପକରଣ — ପଶୁପକ୍ଷୀଙ୍କ ଚିତ୍ର, ଫ୍ଲାସ୍‌କାର୍ଡ଼, ଯୁକ୍ତାକ୍ଷର କାର୍ଡ଼ ଇତ୍ୟାଦି

ପାଠ-୮

ସମୟ - ୮ ପିରିୟଡ୍

# ସପର୍...ର...ସପ୍



ଝରଣା ଝରେ ଝର୍ ଝର୍,
ପବନ ବହେ ସର୍ ସର୍ ।
ମେଘ ଗରଜେ ଘଡ୍ ଘଡ୍,
ଚଢ଼େଇ ଉଡ଼େ ଫଡ୍ ଫଡ୍ ।

ମେଘ ବରଷେ ଟପ୍ ଟପ୍,
ବେଙ୍ଗୁଲୀ ଡିଏଁ ଖପ୍ ଖପ୍ ।
ବିଜୁଳି ମାରେ ଚକ୍ ଚକ୍,
ଦରିଆ ଢେଉ ଝକ୍ ଝକ୍ ।

ହାତୀ ଚାଲୁଥିଲା ଧପ୍ ଧପ,
ଖସଡ଼ି ପଡ଼ିଲା ସପର୍...ର...ସପ୍ ।

# ଅଭ୍ୟାସ

୧. କିଏ କେମିତି ରାବେ ଓ ଚାଲେ — ଚିତ୍ର ଦେଖି ଲେଖ ।
ଯେପରି — ମେଘ ଗରଜେ ଘଡ୍ ଘଡ୍ ।





୨. ଆଙ୍କି ଆଙ୍କି ଚାଲ ।



୩.(କ) ପାଣିରେ କେଉଁମାନେ ଅଛନ୍ତି କହ ।
(ଖ) ରଙ୍ଗ ଦିଅ ।



୪. ବିନ୍ଦୁ ଯୋଡ଼ ଓ ରଙ୍ଗ ଦିଅ ।



୫. କିଏ କେମିତି କରେ ଓ ଚାଲେ ।

ଯେପରି ବେଙ୍ଗ କରେ କଟର କଟର ।

ଛେଳି ବୋବାଏ ________

ବିଲେଇ କରେ ________

କୁକୁର କରେ ________

ବିଲୁଆ କରେ ________

ସାଇକେଲ ଚାଲେ ________

ମଟର ଚାଲେ ________

ଉଡ଼ାଜାହାଜ ଚାଲେ ________

ରେଳଗାଡ଼ି ଚାଲେ ________



୬. ଆଗକୁ ବଢ଼ ।

ଘର୍ ଘର୍ ଚକ୍ ଚକ୍

ସର୍ ସର୍ ________

ଫଡ଼୍ ଫଡ଼୍ ________

________ ________

________ ________

________ ________

________ ________

୭. ବର୍ଷାଦିନେ କେଉଁ ଜିନିଷ ବେଶି ବ୍ୟବହାର କରୁ ?



୮. ବର୍ଷାଦିନେ କ'ଣ ହୁଏ ଲେଖ ।

________________________

________________________

________________________

________________________

________________________

________________________

________________________

________________________

୯. ବର୍ଷା ଦିନେ କି କି ଫଳ ଫଳେ ଲେଖ ।

________ ________ ________

________ ________ ________

________ ________ ________

________ ________ ________

________ ________ ________



କ'ଣ ଶିଖିବେ

- କବିତାକୁ ତାଳ ସହିତ ଆବୃତ୍ତି କରିବେ ।
- ହଳନ୍ତ ( ୍ ) ର ବ୍ୟବହାର ଜାଣିବେ ।
- ବର୍ଷାଋତୁ ସମ୍ପର୍କରେ ଧାରଣା ପାଇବେ ।

ସୂଚନା

- କବିତାରେ କୌଣସି କଷ୍ଟ ଶବ୍ଦ ବ୍ୟବହାର କରାଯାଇନାହିଁ ।
- ହଳନ୍ତ ( ୍ )ର ବ୍ୟବହାର ବାରମ୍ବାର ହୋଇଛି ।

ପ୍ରସ୍ତୁତି

ଆରେ ମେଘ କଳା ମେଘ ଆସେ ଝୁମି ଝୁମି
ତୋ' ସାଙ୍ଗରେ ଥଣ୍ଡା ପବନ ଆଣେ ଝୁମି ଝୁମି ।
ଦୂରରେ କାହିଁ ବଇଁଶୀର ସ୍ୱର ଶୁଭୁଛି
ମୋ' ମନଟା ଧିରେ ଡେଣେ ଚାଲିଯାଉଛି ।
ଆରେ ମେଘ କଳା ମେଘ କ'ଣ ଆଣେ ଝୁମି ?
ଉ-ତୋ ସାଙ୍ଗରେ ...............
ଦୂରରେ କ'ଣ ଶୁଭୁଛି ?
ଉ-ଦୂରରେ କାହିଁ ବଇଁଶୀ.......

- କ'ଣ କ'ଣ ଧଳା ?
- ପ୍ରତ୍ୟେକ ପିଲା ଧଳାରଙ୍ଗ ଜିନିଷର ନାମ କହିବେ । ଯଥା- ଦୁଧ, ଦାନ୍ତ

ଶିକ୍ଷକଙ୍କ କାର୍ଯ୍ୟ

- ପୂର୍ବପାଠ ଅନୁଯାୟୀ ଗୀତ ଆବୃତ୍ତି କରନ୍ତୁ ।
- ଗୀତରୁ ଶବ୍ଦ, ଶବ୍ଦରୁ ହଳନ୍ତ ( ୍ ) ଚିହ୍ନଟ କରନ୍ତୁ ।

ଅଭ୍ୟାସ

- ପାଠ ଅନୁଯାୟୀ
- ହଳନ୍ତ ( ୍ ) ଥିବା ଶବ୍ଦ ଲେଖିବେ ।
- ବର୍ଷାଋତୁର ବିଭିନ୍ନ ଘଟଣା ସମ୍ପର୍କିତ ଶବ୍ଦ ଲେଖିବେ ।

ଉପକରଣ

ଶବ୍ଦକାର୍ଡ୍

ଦଳଗତ କାର୍ଯ୍ୟ

କାର୍ଡ୍ ଖେଳ

- ଦୁଇଦଳକୁ ଶବ୍ଦକାର୍ଡ୍ ଦିଆଯିବ ।
- ଗୋଟିଏ ଦଳ କାର୍ଡ ଦେଖାଇଲେ ଅନ୍ୟଦଳ ତା' ସହିତ ସମ୍ପର୍କିତ କାର୍ଡ୍ ଦେଖାଇବ ।

ଯଥା ନଈ- ନଈବଢ଼ି
ରଥଯାତ୍ରା- ଜଗନ୍ନାଥ
ରାକ୍ଷୀ- ଶ୍ରାବଣପୂର୍ଣ୍ଣିମା

ଆଉ କ'ଣ

ପିଲାମାନେ ଗୋଲ୍‌ରେ ବସିବେ । ଶିକ୍ଷକ ଆରମ୍ଭ କରିବେ । ଆକାଶରେ ମେଘ- କ'ଣ କ'ଣ ହୁଏ ? ପିଲାମାନେ ଜଣ ଜଣ କରି ଆକାଶର ଦୃଶ୍ୟ, ବର୍ଷା, ପାଗର ପରିବର୍ତ୍ତନ, ପୃଥିବୀର ପରିବର୍ତ୍ତନ, ଚାଷ କଥା କହି କହି ଯିବେ ।

ମୋତେ ମୋ ଜାଗାରେ ରଖ

ହଳନ୍ତ ( ୍ ) କୁ ଠିକ୍ ଯାଗାରେ ଲଗାଇ ଲେଖ ।

| ଯଥା: | ଠକ ଠକ | ଢକ ଢକ |
|---|---|---|
| | ଟିକ ଟିକ | ଠିକ ଠିକ |
| | ଫୁର ଫାର | ଭୁରଭାର |
| | ________ | ________ |
| | ________ | ________ |

ପ୍ରକଳ୍ପ

- ବର୍ଷାଋତୁରେ ବ୍ୟବହୃତ ହେଉଥିବା ଜିନିଷ ଗୁଡ଼ିକର ଏକ ତାଲିକାକର ।
- ହଳନ୍ତ ( ୍ ) ଥିବା ୧୦ଟି ଲେଖାଏଁ ଫ୍ଲାସକାର୍ଡ୍ ତିଆରି କରି ଆଣ ।

পাঠ-৯

# বাঘর কমাল

সময় - ୧୪ পিরিয়ড়্



କହ ଓ ଲେଖ ।

★ ଦୁର୍ବଳ ବାଘଟି ଦ୍ୱାର ମୁହଁରେ ବସି ଚିନ୍ତା କରୁଥିଲା ।

ବାଘ ଦୁର୍ବଳ କାହିଁକି ହୋଇଥିଲା ?

★ କାଉ ଓ କୋଇଲି ପ୍ରଚାର ଦାୟିତ୍ୱ ନେଲେ ।

ବାଘ କାଉ ଓ କୋଇଲିକୁ କ'ଣ ପ୍ରଚାର କରିବାକୁ କହିଥିବ ?








କିଏ ଦୌଡ଼ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରିବ ବୋଲି ତୁମେ ଭାବୁଛ ?

- - - - - - - - - - - - - - - - - - -

- - - - - - - - - - - - - - - - - - -




ଘୁଷୁରୀଟି ଅଧାବାଟରେ କାହିଁକି ରହିଗଲା ?



# ଅଭ୍ୟାସ

୧. ଆସ ବାଘଟି ଦୌଡ଼ ପ୍ରତିଯୋଗିତା କାହିଁକି କରିଥିଲା ସେ ବିଷୟରେ ଆମ ଭିତରେ କଥାବାର୍ତ୍ତା ହେବା ।

୨. ତୁମେ ପ୍ରତିଦିନ କ'ଣ କ'ଣ ଖାଅ ତାଲିକା କର ।

______________________________

______________________________

______________________________

ତାଲିକାରୁ କିଏ କେଉଁ ଶ୍ରେଣୀଭୁକ୍ତ ଲେଖ ।

| ଫଳ ପନିପରିବା | କଞ୍ଚା କ'ଣ ଖାଉ | ପାଚିଲା କ'ଣ ଖାଉ | କଞ୍ଚା ଓ ପାଚିଲା ଉଭୟ ଖାଉ |
|---|---|---|---|
| | | | |

୩. ଘରେ କିଏ ଆଗେ ପହଞ୍ଚିବ ଚିହ୍ନାଅ ?



୪. ଦିଆଯାଇଥିବା ଦୁଇଟି ଶବ୍ଦକୁ ନେଇ ବାକ୍ୟ ଗଢ଼ ।

ଘର- ବଗିଚା ______________________________

ବାଘ- ଜଙ୍ଗଲ ______________________________

ମୀନା- ପୁରସ୍କାର ______________________________

୫. କହ ଓ ଲେଖ ।

ଘୁଷୁରୀ କାହିଁକି ଅଧା ବାଟରେ ରହିଗଲା ?

______________________________

______________________________

୬. କହ ଓ ଲେଖ ।

ପୁରସ୍କାର ବିତରଣୀ ଉତ୍ସବ କାହିଁକି ଫସର ଫାଟିଲା ?

______________________________

______________________________

______________________________

୭. ଆଗକୁ ଯାଅ ।

ଜେଜେ ମା' ବଜାରକୁ ବାହାରିଲେ । ବାଟରେ______________ ଦେଖିଲେ । ଗୋଟିଏ ଷଣ୍ଢ

______________________________

______________________________

______________________________

______________________________

______________________________

______________________________

______________________________

______________________________

______________________________

______________________________

କ'ଣ ଶିଖିବେ

ଭାଷା ◆ ଅନୁଚ୍ଛେଦ ଲେଖି ପାରିବେ ଓ ପଢ଼ିପାରିବେ ଓ 'ସ୍କ' ଓ 'ବ' ଫଳାର ବ୍ୟବହାର ଜାଣିବେ ।

ପରିବେଶ ◆ ସ୍ୱାସ୍ଥ୍ୟ ପାଇଁ ଖାଦ୍ୟର ଆବଶ୍ୟକତା ରହିଛି, ଏହା ଜାଣିବେ ।

ସୂଚନା

ଭାଷା ◆ ଚିତ୍ରରେ ଜଙ୍ଗଲ ଦିନକୁ ଦିନ କ୍ଷୟ ହେବାଦ୍ୱାରା ବାଘଟି ଖାଇବାକୁ ନ ପାଇ ଦୁର୍ବଳ ହୋଇଯାଇଛି । ବାଘ, କାଉ କୋଇଲିକୁ ଦୂତ ଭାବରେ ବ୍ୟବହାର କରିଛି । ବିଭିନ୍ନ ପଶୁଙ୍କର ଦୌଡ଼ ପ୍ରତିଯୋଗିତା ପରେ ପୁରସ୍କାର ବିତରଣ ଉତ୍ସବ । ଚିତ୍ରରୁ ଅନୁଚ୍ଛେଦ ଲେଖାଯିବ ।

ପରିବେଶ ◆ ଚିତ୍ରରେ ପଶୁମାନଙ୍କର ସ୍ୱାସ୍ଥ୍ୟ ପାଇଁ ଆଲୋଚନା ସହିତ ମଣିଷର ସୁସ୍ଥସ୍ୱାସ୍ଥ୍ୟ ପାଇଁ ଖାଦ୍ୟର ଆବଶ୍ୟକତାକୁ ଆଲୋଚନା କରିବେ ।

ପ୍ରସ୍ତୁତି

''ବାଘ ଖୋଜେ ଶିକାରୀ
ଶିକାରୀ ଖୋଜେ ବାଘ''
ଏହି ଖେଳ ମାଧ୍ୟମରେ ଶିକ୍ଷକ ପିଲାମାନଙ୍କୁ ଅଭ୍ୟସ୍ତ କରାଇବେ ।

ବାଘ ଶିକାର ଖେଳ

ପିଲାମାନେ ଗୋଲାକାରରେ ଛିଡ଼ା ହେବେ । ଶିକ୍ଷକ ମଝିରେ ଥାଇ ଗୀତଟି ଗାଇବେ । ପିଲାଙ୍କୁ ସୂଚନା ଦେବେ, ବାଘ ଭଳି ଘାଉ କଲେ, ପିଲାମାନେ ବନ୍ଧୁକ ଦେଖାଇବେ । ''ଶିକ୍ଷକ ବନ୍ଧୁକ ଭଳି ଅଭିନୟ କଲେ, ପିଲାମାନେ ବାଘ ଅଭିନୟ କରିବେ ।'' ଯେଉଁ ପିଲା ଅଭିନୟ କରି ପାରିବ ନାହିଁ ସେ ପୁଣି ମଝିକୁ ଆସି ଖେଳଟିକୁ ପରିଚାଳନା କରିବ ।

ପ୍ରଶ୍ନ ଖେଳ
◆ କେଉଁ ଫଳଗୁଡ଼ିକ ମିଠା ?
◆ କେଉଁ ଫଳଗୁଡ଼ିକ କଞ୍ଚା ଖିଆଯାଏ ?
◆ କେଉଁ ଫଳଗୁଡ଼ିକ ପିତା ?

ଦଳଗତ କାର୍ଯ୍ୟ

ପିଲାମାନଙ୍କୁ ବିଭିନ୍ନ ଦଳରେ ଭାଗ କରାଯିବ । ଦଳରେ ଚିତ୍ର ଦିଆଯିବ । ଚିତ୍ର ଦେଖି ଗୋଟିଏ ଗୋଟିଏ ବାକ୍ୟ କହିବେ ।

ପ୍ରକଳ୍ପ

◆ ମୋଟା, ପତଳା ମଣିଷର କାର୍ଟୁନ ସଂଗ୍ରହ କରିବେ ।
◆ ନିଜ ଘରେ ଖାଉଥିବା ୭ ଦିନର ଖାଦ୍ୟ ତାଲିକା କରିବେ ।
◆ ସ୍ଥାନୀୟ ଗୃହ ପାଳିତ ପଶୁମାନଙ୍କର ଖାଦ୍ୟ ତାଲିକା କରିବେ ।

କିଏ କରିପାରିବ ?

ମୋଟୁ ଭାଲୁର ନାଟ' ଶିରୋନାମାକୁ ନେଇ ଗପ ଲେଖ ।

ଉପକରଣ

◆ ଫ୍ଲାସକାର୍ଡ଼

## ତୃତୀୟ ଏକକ ପରୀକ୍ଷଣ

ପାଠ-୧୦

# ଏମିତି ବି ହୁଏ

ସମୟ - ୧୨ ପିରିୟଡ୍



ପିମ୍ପୁଡ଼ିଙ୍କ ଦିନେ ବସିଲା ସଭା,
ବିଚାରିଲେ ଆଖୁ ଚାଷ କରିବା ।
ଯତନେ କିଆରି ପ୍ରସ୍ତୁତ କଲେ,
ବାଛି ବାଛି ଚାରା ଲଗାଇ ଦେଲେ ।
କିଆରିରେ ଦେଲେ ବାଡ଼ ଘେରାଇ,
ପାତିମାଙ୍କଡ଼କୁ ଦେଲେ ଜଗାଇ ।
ବଢ଼ିଗଲା ଆଖୁ ହେଲା ପାକଳ,
ହାତୀର ପାଟିରୁ ଗଡ଼ିଲା ଲାଳ ।
ଆଖୁ କିଆରିରେ ପଶିଲା ହାତୀ,
ଚମ୍ପା ଗଛଡାଳୁ ଡାକିଲା ପାତି ।
ଶୁଣିକି ପିମ୍ପୁଡ଼ି ଆସିଲେ ଧାଇଁ,
ହାତୀ ପିମ୍ପୁଡ଼ିଙ୍କ ହେଲା ଲଢ଼େଇ ।
ପିମ୍ପୁଡ଼ି କାମୁଡ଼ା ସହି ନପାରି,
ହାତୀ ପଳାଇଲା ଜୀବନ ଧରି ।
ହାତୀ ଖାଇଯିବ ଆମ ସମ୍ପତ୍ତି,
ଛାଡ଼ି ଦେବୁ ଆମେ ପିମ୍ପୁଡ଼ି ଜାତି ?



## ଅଭ୍ୟାସ

୧. ପଢ଼ ଓ ଲେଖ ।

| | | | |
|---|---|---|---|
| କମ୍ପ | କ___ | ଚମ୍ପାଫୁଲ | ଚ___ଫୁଲ |
| ତମ୍ପ | ତ___ | କମ୍ପାସ | କ___ସ |
| ଫମ୍ପା | ଫ___ | ଝାମ୍ପି | ଝା___ |
| ପାମ୍ପଡ଼ | ପା___ଡ଼ | ସିମ୍ପାଞ୍ଜି | ସି___ଞ୍ଜି |
| ପିମ୍ପୁଡ଼ି | ପି___ଡ଼ି | ସମ୍ପତ୍ତି | ସ___ତ୍ତି |

୨. [ମ୍ପ, ମ୍ପା, ମ୍ପି] କୋଠରି ଭିତରୁ ଅକ୍ଷର ନେଇ ଶୂନ୍ୟସ୍ଥାନରେ ବସାଅ ଓ ନୂତନ ଶବ୍ଦ ଗଢ଼ । - କ___, ତ___, ଚ___, ଫ___, ପା___ଡ଼, ଝା___, କ___ସ, ସି___ଞ୍ଜି

୩. ମୁଁ କିଏ ଲେଖ ।



୪. ବିଲରେ କ'ଣ କ'ଣ ଚାଷ କର ?

ଯେପରି, ଆଖୁ ________ ________ ________

________ ________ ________ ________

୫. ମୁଁ କେଉଁଠି ହୁଏ ଗାର ଦେଇ ସୂଚାଅ ।

ଟଗର ଫୁଲ

ଲେମ୍ବୁ

ଶାଳ

ମହୁଲ

ଗହମ

ଧାନ

ଗୁଆ

ହରଡ଼

ପିଜୁଳି

ଦେବଦାରୁ

ଲାଉ

ମନ୍ଦାର

ରାଶି

ବଗିଚା

ବାଡ଼ି

ଜଙ୍ଗଲ

ବିଲ

୬. ଆମେ ବଗିଚାରୁ କ'ଣ ସବୁ ପାଉ ?

______________________________

______________________________

______________________________

______________________________

______________________________



କ'ଣ ଶିଖିବେ

ଭାଷା ◆ ଗୀତ ଆବୃତ୍ତି କରିବେ

ପରିବେଶ ◆ ଶସ୍ୟ ଚିହ୍ନିବେ

ପ୍ରସ୍ତୁତି ◆ ସକାଳ ହେଲା ଯେବେ

ସକାଳ ହେଲା ଯେବେ ପାହିଲା ରାତି
ରାବିଲେ କାକ ପିକ କଜ୍ଜଳପାତି
ସୂରୁଜ ପୂରୁବ ଦିଗୁ ଆସିଲେ ଉଇଁ
ଦିଶିଲା ସଫାଘର ପଡ଼ିଆ ଭୂଇଁ
ନାନାରଙ୍ଗର ଫୁଲ ଯାଇଛି ଫୁଟି
ଉଡ଼ିଁର ପ୍ରଜାପତି ଗଲେଣି ଜୁଟି
ଧୋଇବା ହାତ ମୁହଁ ଶେଯରୁ ଉଠି
ଦେବେଟି ମାଆ ଯାହା ଖାଇବା ବସି
ସ୍କୁଲ ଯାଇ ମନ କରିବା ଖୁସି ।
ସୂରୁଜ କେଉଁ ଦିଗୁ ଆସିଲେ ଉଇଁ ?
କ'ଣ ସବୁ ଆସି ଗଲେଣି ଜୁଟି ?

- କୋଠରିରେ/ବାହାରେ ଦୁଇ ମୁଣ୍ଡରେ ଦୁଇଟି ଚିହ୍ନ (ଲମ୍ୱା ଗାର) ଦିଆଯିବ ।
- ଗୋଟିଏ ଗାର (୨) ପାଖରେ ପିଲାମାନେ ଧାଡ଼ି ହୋଇ ରହିବେ ।
- ୧ ନମ୍ୱର ଗାର ପାଖରେ କିଛି ବାକ୍ୟ ଲେଖାହୋଇ ଓଲଟାଇ ରଖାଯିବ ।
- ଶିକ୍ଷକ ଗୋଟି ଗୋଟି କରି ବାକ୍ୟ ଗୁଡ଼ିକୁ କହିବା ପାଇଁ କହିବେ ।

ପ୍ରକଳ୍ପ

- ହାଟ/ଦୋକାନକୁ ଯାଇ ବିଭିନ୍ନ ଶସ୍ୟ ସଂଗ୍ରହ କରି ଜରି ମୁଣାରେ ରଖି ସିଲେଇ କର ।
- ପିମ୍ପୁଡ଼ି ହାତୀକୁ ଘଉଡ଼ାଇଲା ପରି ତୁମେ ଜାଣିଥିବା ଗପ/ଗୀତ ସଂଗ୍ରହ କର ।

ପିଲାଙ୍କ କାମ

- ପିଲାମାନେ ଗୀତ ଆବୃତ୍ତି କରିବେ ।
- ଅଭିନୟ କରିବେ ।
- ପରସ୍ପର ମଧ୍ୟରେ ୨ଧାଡ଼ି କହିଲେ- ଅଭିନୟ କରିବେ ।
- ଅଭିନୟ କଲେ- ବାକ୍ୟ କହିବେ ।

ଅଭ୍ୟାସ

- ୧ରୁ ୨ ନମ୍ୱର ପର୍ଯ୍ୟନ୍ତ ପାଠ ଅନୁଯାୟୀ ଲେଖିବେ ।

ସାମଗ୍ରୀ

- କାର୍ଡ଼ରେ ବାକ୍ୟ ଗୁଡ଼ିକ ଲେଖିବେ ।
- ପିଲାଙ୍କ ସଂଖ୍ୟା ଅନୁଯାୟୀ କାର୍ଡ଼ କରିବେ ।

ପାଠ-୧୧

# ଅତିରୁ ଇତି

ସମୟ - ୧୦ ପିରିୟଡ୍



ଉତ୍ତମପୁର ଗାଁରେ ମୂଷାମାନେ ଜିନିଷପତ୍ର ନଷ୍ଟ କଲେ । ଲୋକଙ୍କ ମନରେ କଷ୍ଟ ହେଲା । ଦୁଷ୍ଟ ମୂଷାମାନେ ସବୁବେଳେ ବିଲେଇ ମାନଙ୍କଠାରୁ ଖସି ଯାଉଥାନ୍ତି । ସେମାନେ ଭାବିଲେ, ବିଲେଇ ମାନେ ଦୁର୍ବଳ ହୋଇ ଗଲେଣି । ମୂଷାମାନଙ୍କର ଗର୍ବ ହୋଇଗଲା । ମୂଷାମାନେ ମଉଜ କରିବାକୁ ଚାହିଁଲେ । ବିଚାର କଲେ, କାର୍ତ୍ତିକ ପୂର୍ଣ୍ଣମୀଦିନ ଅଷ୍ଟପ୍ରହରୀ କରି ନାଚ କୀର୍ତ୍ତନ କରିବେ । ଅଷ୍ଟ ପ୍ରହରୀ ଆୟୋଜନ ହେଲା । ମୂଷାମାନେ ଖୋଳ କରତାଳ ବଜେଇ ନାଚିଲେ ।

ବିଲେଇମାନେ ବାଦ୍ୟ ଶୁଣି ଜାଣିଗଲେ ମୂଷାମାନେ ମଉଜ କରୁଛନ୍ତି । ସେମାନେ ବିଚାର କଲେ, ମୂଷାମାନଙ୍କୁ ଜବତ କରିବାକୁ ଏଇଟା ଠିକ୍ ସମୟ । ସମସ୍ତେ ଏକାଠି ହୋଇ ଏକାଥରକେ ମାଡ଼ି ଆସିଲେ ।

ମୂଷା ଦଳପତି ତାଳ ଦେଉଥାଏ ''ଧିନ୍ ଧିନ୍ ଧିନ୍'' । ବିଲେଇ ଦଳପତି ଆଦେଶ ଦେଲେ ଜଣକୁ ତିନ୍, ଜଣକୁ ତିନ୍ । ମୂଷାମାନେ ଖୋଳ କରତାଳ ଛାଡ଼ି ପ୍ରାଣ ବିକଳରେ ଗାଁ ଛାଡ଼ି ପଳାଇଲେ । କିଛି ମୂଷା ବିଲେଇଙ୍କ ହାବୁଡ଼ରେ ପଡ଼ି ପ୍ରାଣ ହରାଇଲେ ।



## ଅଭ୍ୟାସ

୧. ପଢ଼ ଓ ଲେଖ ।

| | | | | | |
|---|---|---|---|---|---|
| ନଷ୍ଟ | - | ନଷ୍ଟ | ଧର୍ମ | - | ______ |
| କଷ୍ଟ | - | ______ | କର୍ମ | - | ______ |
| ମୁଷ୍ଟି | - | ______ | କାର୍ତ୍ତିକ | - | ______ |
| ବୃଷ୍ଟି | - | ______ | କାର୍ଯ୍ୟ | - | ______ |
| ଉତ୍ତମ | - | ______ | ଉତ୍ତର | | ______ |

୨. ଶବ୍ଦ ଗଢ଼ ।







୩. ତଳ ଶବ୍ଦଗୁଡ଼ିକରେ ଥିବା 'ଷ' ତଳେ 'ଟ' ବସାଇ ନୂଆ ଶବ୍ଦ ଲେଖ ।

ମୁଷି, ପୁଷି, ବୃଷି, ସୃଷି, ସମଷି, ଅଷ, କଷ

______, ______, ______, ______, ______, ______, ______

୪.



୫. '୍ର' (ରେଫ) ଦିଅ, ପଢ଼ ଓ ଲେଖ ।

ଦୁବଳ, ଗଜନ, ମାଗଶିର, ବିସଜନ, ଆଶୀବାଦ,

ଲେଖ । ଦୁର୍ବଳ, ____, ____, ____, ____

ଆଦଶ କୋଣାକ ନିମାଣ ପବତ କୀତନ ନତକୀ

____, ____, ____, ____, ____, ____

ମୂତ୍ତି, କାତ୍ତିକ

____ ,____

୬. ମଝି ଅକ୍ଷରକୁ ମିଶାଇ ଶବ୍ଦ ଗଢ଼ ଓ ଖାଲି ଜାଗାରେ ଲେଖ ।




୭. ଯେ କୌଣସି ୩ଟିର ଚିତ୍ର ଅଙ୍କନ କର ।

ମୁଷ୍ଟିର ଚିତ୍ର

ବୃତ୍ତ ଚିତ୍ର

ମୂର୍ତ୍ତି ଚିତ୍ର

ପୋଷ୍ଟକାର୍ଡ଼ ଚିତ୍ର

ଦର୍ପଣ ଚିତ୍ର

ନର୍ତ୍ତକୀ ଚିତ୍ର



ନର୍ତ୍ତକୀର ଚିତ୍ରକୁ ରଙ୍ଗ କର ।

୮. ତୁମ ଗାଁ'ରେ କି ପର୍ବ ପାଳ, ତାହା ଦେହରେ ଗୋଲ ବୁଲାଅ ।

ଅଷ୍ଟ ପ୍ରହରୀ, ଦୋଳ, ରଜ, ନୂଆଖାଇ, ରଥଯାତ୍ରା,
ପୌଷପୂର୍ଣ୍ଣିମା, ଦୁର୍ଗାପୂଜା, ଗଣେଶ ପୂଜା, ସରସ୍ୱତୀ ପୂଜା, ମହରମ୍,
ଇଦୁଲଫିତର୍, ବଡ଼ଦିନ, ଦୀପାବଳୀ, ରାକ୍ଷୀ

୯. କହ ଓ ଲେଖ ।

ବାଦ୍ୟ ବାଜେ- ଖୋଳ, କରତାଳ, ବଂଶୀ,____ , ____ , ____ , ____

୧୦. ଗଣେଶ ପୂଜାରେ କ'ଣ ହୁଏ କହ ଓ ଲେଖ ।

ଗଣେଶ ପୂଜା ________________________________

________________________________
________________________________
________________________________
________________________________
________________________________
________________________________
________________________________
________________________________
________________________________
________________________________
________________________________
________________________________ ।



**କ'ଣ ଶିଖିବେ**

ଭାଷା ◆ 'ଷ୍ଟ' 'ତ୍ତ' ଚିହ୍ନିବେ, ପଢ଼ିବେ ଓ ଲେଖିବେ ।

ପରିବେଶ ◆ ନିଜ ଅଞ୍ଚଳର ପର୍ବପର୍ବାଣି ବିଷୟରେ ଜାଣିବେ ।

**ସୂଚନା**

◆ ଏଠାରେ 'ଷ୍ଟ' ଓ 'ତ୍ତ' ଅକ୍ଷର ବାରମ୍ବାର ବ୍ୟବହୃତ ହୋଇଛି ।

◆ ଅଞ୍ଚଳର ପର୍ବପର୍ବାଣି ବିଷୟରେ ଆଲୋଚନା କରିବେ ।

**ପ୍ରସ୍ତୁତି**

ଶବ୍ଦ ଖେଳ — 'ଷ୍ଟ', 'ତ୍ତ' ଆଦି ଲାଗିଥିବା କିଛି ଶବ୍ଦ କହ । ଯଥା- କଷ୍ଟ, ଉତ୍ତର

◆ ତୁମେ ମୋତେ ଭଲ ପାଅ କି ?

ଶିକ୍ଷକ ପିଲାଙ୍କୁ ଗୋଲ୍‌ରେ ଠିଆ କରାଇ ସମସ୍ତଙ୍କ ବେକରେ ବା ଛାତିରେ ଅକ୍ଷରକାର୍ଡ଼ ବା ଯୁକ୍ତାକ୍ଷର କାର୍ଡ଼ ଝୁଲାଇବେ । ଜଣେ ପିଲା ବୁଲି ବୁଲି ଯାହାକୁ ଚାହିଁବ ପଚାରିବ, "ତୁମେ ମୋତେ ଭଲ ପାଅ କି ?" ପିଲାଟି ଯଦି ହଁ କରିବ ତେବେ ବୁଲୁଥିବା ପିଲାଟି ପୁଣି ଅନ୍ୟ ଜଣକୁ ସେପରି ପଚାରିବ । ଯଦି ପିଲାଟି ନା ବୋଲି ଉତ୍ତର ଦିଏ ତେବେ ପ୍ରଥମ ପିଲାଟି ପଚାରିବ, "ତେବେ କାହାକୁ ଭଲପାଅ ?" ପିଲାଟି ଯେଉଁ ଅକ୍ଷରର ନାମ ଧରିବ ସେହି ଅକ୍ଷର ଥିବା ପିଲାମାନେ ନିଜ ନିଜ ସ୍ଥାନ ପରିବର୍ତ୍ତନ କରିବେ । ସେତେବେଳେ ପ୍ରଥମ ପିଲାଟି ଖାଲି ସ୍ଥାନଟିଏ ଅଧିକାର କରିବାକୁ ଚେଷ୍ଟା କରିବ । ଯିଏ ସ୍ଥାନ ଅଧିକାର କରି ନପାରି ରହିଯିବ ସେ ପୁଣି ପୂର୍ବଭଳି ପଚାରି ବୁଲିବ । ଶିକ୍ଷକ ଦେଖିବେ ଯେପରି ଝୁଲି ଯାଇଥିବା କାର୍ଡ଼ରେ ସମାନ ଅକ୍ଷର ଦୁଇରୁ ଅଧିକ ରହେ ।

**ଆମେ ଜାଣିବା**

◆ ପର୍ବପର୍ବାଣି ଦ୍ୱାରା ପାରିବାରିକ ଓ ସାମାଜିକ ସମ୍ପର୍କ ଦୃଢ଼ ହୁଏ ।

**ଦଳଗତ କାର୍ଯ୍ୟ**

◆ ସମ୍ପର୍କିତ ଶବ୍ଦ ଲେଖ ।







**ଅନ୍ୟକାର୍ଯ୍ୟ**

◆ ନିଜ ଘରେ ପାଳନ କରୁଥିବା ପର୍ବ ବିଷୟରେ ଲେଖିବେ ।

**ପ୍ରକଳ୍ପ**

◆ କେଉଁ ଋତୁରେ କେଉଁ ପର୍ବ ପାଳନ କରାଯାଏ ତାଲିକା କରିବେ ।

◆ ପର୍ବ ପର୍ବାଣି ସମ୍ପର୍କୀୟ ତଥ୍ୟ ସଂଗ୍ରହ କରିବେ ।

◆ ବିଭିନ୍ନ ପର୍ବପର୍ବାଣିର ଚିତ୍ର ଦେଖି ପିଲାମାନେ ଚିତ୍ର ସମ୍ବନ୍ଧରେ କହିବେ ।

**ଶିକ୍ଷକଙ୍କ କାମ**

ପୂର୍ବପରି ଷ୍ଟ ଓ ଭ୍ର ଅକ୍ଷର ପରିଚୟ

ମାଥ୍ସ୍

| କ | ଚି | ଭ୍ର | ଅ |
|---|---|---|---|
| ମା | ର | ଷ୍ଟ | ଆ |
| ନ | ଭ୍ର | ମ | ବି |
| କୀ | ଗ | ର୍ଭ | ବ |

ଷ୍ଟ, ଭ୍ର ରେ ଗୋଲ ବୁଲାଅ ।

ଅଗଷ୍ଟ ପନ୍ଦର ଦିନ ଆର୍ତ୍ତବାବୁ ଆମ ବିଦ୍ୟାଳୟରେ ପତାକା ଉତ୍ତୋଳନ କଲେ । କହିଲେ ତୁମେ ସମୟ ନଷ୍ଟ କରନାହିଁ । କୌଣସି କାମ କଷ୍ଟ ନୁହେଁ । ଚେଷ୍ଟା କରି ଉତ୍ତମ ରୂପେ ପଢ଼ିଲେ ଉନ୍ନତି କରିବ ।

**ପିଲାଙ୍କ କାମ**

◆ ପିଲାମାନେ ପଢ଼ିବେ

◆ ଶବ୍ଦ ଗଢ଼ିବେ

◆ ନିଜ ଅଞ୍ଚଳରେ ପାଳନ କରାଯାଉଥିବା ପର୍ବପର୍ବାଣିର ନାମ କହିବେ ।

◆ ନିଜ ଅଞ୍ଚଳରେ ପାଳିତ ହେଉଥିବା ପର୍ବପର୍ବାଣିର ତାଲିକା କରିବେ ।

◆ ଗୋଟିଏ ନିର୍ଦ୍ଦିଷ୍ଟ ପର୍ବ ଉପରେ ସମସ୍ତେ ବାକ୍ୟଟିଏ ଲେଖାଏଁ କହିବେ ।

**ଅଭ୍ୟାସ**

◆ ପାଠ ଅନୁଯାୟୀ

ଉପକରଣ- ପର୍ବପର୍ବାଣି, ଚିତ୍ର, ଯୁକ୍ତାକ୍ଷର କାର୍ଡ଼, ଶବ୍ଦକାର୍ଡ଼

ପାଠ-୧୨

ସମୟ - ୧୫ ପିରିୟଡ୍

# ଚୋର, ଧୋ..ଧୋ..



ଜଙ୍ଗଲରେ ଦିନେ ସନ୍ଧ୍ୟାରେ ଭୋକିଲା ସିଂହଟିଏ ବୁଲୁଥିଲା । ବୁଲୁ ବୁଲୁ ଗୋଟିଏ ଗୁମ୍ଫା ପାଖରେ ପହଞ୍ଚିଲା । ଗୁମ୍ଫାକୁ ଶୁଙ୍ଘି ଜାଣିଲା, ସେଠାରେ ବିଲୁଆ ରହୁଛନ୍ତି । ବିଲୁଆଙ୍କୁ ଖାଇବାକୁ ବିଚାର କଲା । ଗୁମ୍ଫା ଭିତରେ ଛକି ବସିଲା ।

ରାତି ପାହିଲାରୁ ବିଲୁଆମାନେ ଫେରିଲେ । ସେମାନଙ୍କ ନେତା ବଞ୍ଚକ ଦେଖିଲା, ସିଂହର ପଞ୍ଝା ଚିହ୍ନ ଗୁମ୍ଫା ପର୍ଯ୍ୟନ୍ତ ଲମ୍ବି ଯାଇଛି । ଅନୁମାନ କଲା ଫେରିବାର ଚିହ୍ନ ନାହିଁ । ସେ ଜାଣିଗଲା ସିଂହଟିଏ ଗୁମ୍ଫା ଭିତରେ ଅଛି ।



ବିଲୁଆମାନେ ବିଚାର କଲେ ସିଂହକୁ ପାନେ ଦେବେ । କେତେକ ସାହସୀ ବିଲୁଆ ଦମ୍ଭ କରି ଚଞ୍ଚଳ ପଛ ପଟୁ ଗୁମ୍ଫା ଉପରକୁ ଚଢ଼ିଲେ । ସେମାନେ ବଡ଼ ପଥର ଖଣ୍ଡେ ଧରି ଜଗି ରହିଥାନ୍ତି ।

କିଛି ବିଲୁଆ ଦୂରରେ ଥାଇ ଚିତ୍କାର କଲେ । ସିଂହ ରାଜା ଘରେ ପଶି ଚୋରି କରୁଛି । ସିଂହ ରାଗରେ ପଦାକୁ ବାହାରିଲା । ଉପରେ ଛକି ରହିଥିବା ବିଲୁଆମାନେ ଆଖି ପିଛୁଡ଼ାକେ ପଥର ଛାଡ଼ିଦେଲେ । ପଥର ସିଂହର ଅଣ୍ଟାରେ ପଡ଼ିଲା । ତାର ଅଣ୍ଟା ଭାଙ୍ଗିଗଲା ।

ସିଂହ ବିକଳରେ ଘୁଷୁରି ଘୁଷୁରି ଜଙ୍ଗଲକୁ ପଳାଇଲା । ତା'ର ପଛ ଗୋଡ଼ର ଚମ ଚାଞ୍ଛି ହୋଇ ଯାଉଥାଏ । ବିଲୁଆମାନେ ଖୁସିରେ ତାଳିମାରି ନାଚିଲେ ''ଚୋର ପଳେଇ ଗଲା, ଚୋର ପଳେଇ ଗଲା'' ।

## ଅଭ୍ୟାସ

୧. ପଢ଼ ଓ ଲେଖ ।

| | | | |
|---|---|---|---|
| ଜଙ୍ଘ | ________ | ଗୁମ୍ଫା | ________ |
| ସଙ୍ଘ | ________ | ବାମ୍ଫ | ________ |
| ସାଙ୍ଘାତିକ | ________ | ଡାମ୍ଫଣ | ________ |
| ଶୁଙ୍ଘିବା | ________ | ଲମ୍ଫ | ________ |

| | | | | | |
|---|---|---|---|---|---|
| ଦମ୍ଭ | ________ | ଚଞ୍ଚଳ | ________ | ବାଞ୍ଛାନିଧି | ________ |
| କୁମ୍ଭ | ________ | ପଞ୍ଚମ | ________ | ଚଞ୍ଛାଚଞ୍ଛି | ________ |
| କୁମ୍ଭାଟୁଆ | ________ | | | | |

୨. ଶୁଙ୍ଘିବା, ଜଙ୍ଘିଆ, ସଙ୍ଘ, ଜଙ୍ଘ- ଶବ୍ଦ ଗୁଡ଼ିକୁ ଚିତ୍ର ସହ ଯୋଡ଼ ।



୩. ଆସ ଆମେ ଚିତ୍ର ଚିହ୍ନି କହିବା ଓ ଲେଖିବା ।



୪. ବାକ୍ସ ମଧ୍ୟରୁ ଅକ୍ଷର ଆଣି ଆସ ନୂଆ ଶବ୍ଦ ଗଢ଼ିବା ଓ କହିବା ।

| ମ୍ବୁ, ମ୍ପ, ମ୍ବ, ଞ୍ଚା, ଙ୍ଘି, ଞ୍ଚ, ଞ୍ଜା, ମ୍ଭା |

କୁ____ ପ____ମ ବା____ନିଧି ଡେ____
ଶ____ ଛ____ଣ କୁ____ଟୁଆ
ଲ____ ଜ____ଆ ଦ____

୫. ମୋତେ ସଜାଅ ।

| | | | | | |
|---|---|---|---|---|---|
| ବାଘିଶୁ | ______ | ଡାଣମ୍ପ | ______ | ତପୟଞ୍ଚା | ______ |
| ମଞ୍ଚପ | ______ | କୁରମ୍ଭା | ______ | ବାନିଧିଞ୍ଜା | ______ |
| ମିଙ୍ଘସତ୍ରା | ______ | ରୀମ୍ଭାଗ | ______ | ଛଣଞ୍ଚା | ______ |
| ସସେବାଙ୍ଘ | ______ | କୁଟୁମ୍ଭାଆ | ______ | କୁରମ୍ଭୀ | ______ |

୬. ଜଙ୍ଗଲରେ କ'ଣ ସବୁ ଥାଏ ? ______________________

ଜଙ୍ଗଲରେ କିଏ ସବୁ ରହନ୍ତି ? ______________________

୭. ଉତ୍ତର ଲେଖ ।

(କ) ଗୁମ୍ଫାରେ କିଏ ରହୁଥିଲା ? ______________________

(ଖ) ବିଲୁଆ କିପରି ଜାଣିଲା ଗୁମ୍ଫାରେ ସିଂହଟିଏ ଅଛି ?

______________________
______________________
______________________

(ଗ) ସିଂହ କାହିଁକି ବିଲୁଆକୁ ମାରି ପାରିଲା ନାହିଁ ?

______________________
______________________
______________________
______________________
______________________

### କ'ଣ ଶିଖିବେ

ଭାଷା ◆ ଘ,ଯ,ଙ,ଞ,ଔ,ଈ,ଝ ଚିହ୍ନିବେ, ପଢ଼ିବେ ଓ ଲେଖିବେ ।

ପରିବେଶ ◆ ପଶୁ, ପକ୍ଷୀଙ୍କୁ ଜାଣିବେ ।

### ସୂଚନା

◆ (ଅଭିନୟ ସହ)ଗପରୁ ଶବ୍ଦ, ଶବ୍ଦରୁ ଅକ୍ଷର ଚିହ୍ନିବେ ।

◆ ନିଜ ଅଞ୍ଚଳର ପଶୁପକ୍ଷୀଙ୍କୁ ଚିହ୍ନିବେ ।

### ପ୍ରସ୍ତୁତି

### ଅନ୍ଧ ପୁତୁଳି ଖେଳ

◆ ଜଣକ ଆଖିରେ ରୁମାଲ ବନ୍ଧା ହେବ । ସେ ମଝିରେ ରହିବ । ଅନ୍ୟମାନେ ଗୋଲେଇ ହୋଇ ରହିବେ । ମଝିରେ ଏକ ମୁଣିରେ କିଛି ପତ୍ର, ଫଳ ଥିବ । ପିଲାଟି ମୁଣିରୁ ଯେକୌଣସି ଜିନିଷ କାଢ଼ିପାରେ । ତାକୁ ଶୁଙ୍ଘିବାକୁ ଶିକ୍ଷକ କହିବେ । ରୁମାଲ ବନ୍ଧାଥିବା ପିଲା ଜିନିଷଟିକୁ ଶୁଙ୍ଘି କହିବ ସେଇଟି କ'ଣ ।

◆ ଅଣ୍ଟା ଭାଙ୍ଗି ଗଲେ କୁକୁର କେମିତି ଚାଲିବ ତା'ର ଅଭିନୟ କରିବେ ।

◆ ଦୁଇଜଣ ପିଲା ହାତକୁ ଟେକି ଧରାଧରି ହେବେ । ଅନ୍ୟ ପିଲାମାନେ ସିଧା ଧାଡ଼ିରେ ଛିଡ଼ା ହେବେ ଧାଡ଼ିରେ ଛିଡ଼ା ହୋଇଥିବା ପିଲାମାନେ ଦୁଇ ପିଲାଙ୍କ ହାତ କଡ଼ରେ ଗଳିକି ଯିବେ । ମଝିରେ ମଝିରେ ସେମାନେ ଜଣକୁ ଜଣ ଖାଇବେ ।

### ଶିକ୍ଷକଙ୍କ କାମ

◆ ଗପ କହିବା ସମୟରେ ଶୁଙ୍ଘିବା, ପଞ୍ଝା, ପାଞ୍ଚ ଶବ୍ଦଗୁଡ଼ିକୁ ପ୍ରାଧାନ୍ୟ ଦେବେ ।

◆ ପିଲାମାନେ ପଢ଼ିବା ସମୟରେ ବହିର ଅକ୍ଷରଗୁଡ଼ିକର ଚିହ୍ନଟ କରିବେ ।

### ଦଳଗତ କାର୍ଯ୍ୟ

◆ ପ୍ରତ୍ୟେକ ଦଳ ବହିର ଚିତ୍ରକୁ ଦେଖି ପ୍ରସଙ୍ଗ ଭିତ୍ତିକ ଗପକୁ କହିବେ ।

### ପ୍ରକଳ୍ପ କାର୍ଯ୍ୟ

ଜଙ୍ଗଲରେ କେଉଁ କେଉଁ ପ୍ରାଣୀମାନେ ରହନ୍ତି ତାହାର ଏକ ତାଲିକା କର ଏବଂ କେଉଁମାନେ ଆମର ଉପକାରୀ ପ୍ରାଣୀ ତାହାର ମଧ୍ୟ ଏକ ଚାର୍ଟ ପ୍ରସ୍ତୁତ କର ।

പാഠ-୧୩



# ଜଗୁନୀ ହେଲା ସୁନାପିଲା



ଗାଁ ଶେଷମୁଣ୍ଡରେ ଚାଳ ଘରଟିଏ । ଘରେ ବୁଢ଼ୀଟିଏ ଓ ତା' ପୁଅ ଥାଆନ୍ତି । ପୁଅର ନାମ ଜଗୁନୀ । ସେ ଭାରି ଚଗଲା । କେତେବେଳେ ଆମ୍ବ ଗଛରେ ଚଢ଼ି ଆମ୍ବ ତୋଳେ ତ କେତେବେଳେ କାହାଘରେ ପଶି ଭଙ୍ଗାରୁଜା କରେ । ବୁଢ଼ୀ ଏସବୁ ଦେଖି ଶୁଣି ଦୁଃଖରେ ଭାଙ୍ଗିପଡ଼େ ।



ଜଗୁନୀର ପାଠ ପଢ଼ା ପ୍ରତି ଆଦୌ ଇଚ୍ଛା ନଥାଏ । ଦିନେ ତା' ମାଆ ବୁଝାଇ ସ୍କୁଲକୁ ପଠାଇଲେ । ସ୍କୁଲକୁ ଯିବା ବାଟରେ ଜଗୁନୀର ଖେଳିବାକୁ ଭାରି ଇଚ୍ଛା ହେଲା । ଦେଖିଲା, ରଙ୍ଗିନ ପ୍ରଜାପତିଟିଏ ଉଡ଼ି ଯାଉଛି । ଜଗୁନୀ ହାତ ହଲାଇ ଡାକି କହିଲା-



''ପରଜା ପତି, ପରଜା ପତି
ଉଡ଼ିଯାଉ କାହିଁ ଫୁଲାଇ ଛାତି,
ଗିଲିଦଣ୍ଡା ଖେଳ ଆସ ଖେଳିବା
ନାଚି ଡେଇଁ ଖେଳି ଗୀତ ଗାଇବା ।''

ଏକଥା ଶୁଣି ପ୍ରଜାପତି କହିଲା –
ଚଗଲା ଟୋକା,
କାମ ନାହିଁ ତୋର ବୁଲୁଛୁ ଏକା,
ଯାଉଛି ମୁହିଁ,
ନାନା ଫୁଲ ରସ ଆଣିବା ପାଇଁ ।



ଜଗୁନୀର ମନଦୁଃଖ ହେଲା । କିଛି ବାଟ ଗଲାପରେ ଦେଖିଲା, ପିମ୍ପୁଡ଼ିଟିଏ ତରତର ହୋଇ ଯାଉଛି । ଜଗୁନୀ କହିଲା

"ପିମ୍ପୁଡ଼ି ଭାଇ, ପିମ୍ପୁଡ଼ି ଭାଇ
ତରତର ହୋଇ ଯାଉଛୁ କାହିଁ
ଗିଲିଦଣ୍ଡା ଖେଳ ଆସ ଖେଳିବା
ନାଚି ଡେଇଁ ଖେଳି ଗୀତ ଗାଇବା"





ପିମ୍ପୁଡ଼ି କହିଲା-

"ନାଇଁରେ ନାଇଁ
ଖେଳିବାକୁ ମୋର ସମୟ କାହିଁ
ଯାଉଛି ମୁହିଁ
ଖୁଦକଣା ଚିନି ଯୋଗାଡ଼ ପାଇଁ ।"

ଜଗୁନୀ ମନରେ ଦୁଃଖ ହେଲା । ପିମ୍ପୁଡ଼ିଠାରୁ ସେ ନିଜକୁ ହୀନ ଭାବି ଆଗକୁ ଚାଲିଲା ।

ହଠାତ୍ ଦେଖିଲା ନିମ୍ବଗଛ ଡାଳରୁ କଜଳପାତି ହରବର ହୋଇ ଉଡ଼ିଯାଉଛି । ସେ କହିଲା-

"କଜଳପାତି, କଜଳପାତି,
କୁଆଡ଼େ ଯାଉଛୁ ଲାଞ୍ଜକୁ ଟେକି,
ଗିଲିଦଣ୍ଡା ଖେଳ ଆସ ଖେଳିବା
ନାଚି ଡେଇଁ ଖେଳି ଗୀତ ଗାଇବା ।"

ଏ କଥାଶୁଣି କଜଳପାତି ମୁହଁ ମୋଡ଼ି ଦେଇ କହିଲା-



"ଯାଆରେ ଯାଆ,
ଘରେ ମାଆ କଥା ବୁଝିବୁ ଯାଆ
ଯାଉଛି ମୁହିଁ,
ଆହାର ଆଣିବି ଛୁଆଙ୍କ ପାଇଁ ।"

ଏହାକହି କଜଳପାତି ଫୁର୍ କରି ଉଡ଼ିଗଲା । ଜଗୁନୀ ଭାବିଲା ପ୍ରଜାପତି, ପିମ୍ପୁଡ଼ି ଓ କଜଳପାତିଠାରୁ ବି ସେ ହୀନ । ଜଗୁନୀ ସବୁ ବୁଝିଲା । ପ୍ରତିଜ୍ଞା କଲା । ଆଉ କେବେ ବି ସେ ଚଗଲାମି କରିବ ନାହିଁ । ପାଠପଢ଼ି ବଡ଼ ମଣିଷ ହେବ ।

# ଅଭ୍ୟାସ

କହ ଓ ଲେଖ ।

୧. ବୁଢ଼ୀଟି ସବୁବେଳେ ଦୁଃଖରେ ଭାଙ୍ଗିପଡ଼େ କାହିଁକି ?

୨. ଢଗୁନୀ କାହା କାହା ସହିତ ଖେଳିବାକୁ ଇଚ୍ଛା କରିଥିଲା ?

୩. ପ୍ରଜାପତି ସବୁବେଳେ କ'ଣ କରିଥାଏ ?

୪. ତୁମ ଘରର ଚାରିପଟେ ତୁମେ ଅନ୍ୟ କେଉଁ ପକ୍ଷୀ ଦେଖୁଛ ତାହାର ଏକ ତାଲିକା କର ।

୫. "ନାଇଁରେ ନାଇଁ ଖେଳିବାକୁ ମୋର ସମୟ କାହିଁ"- ଏକଥା କିଏ କାହାକୁ କହିଛି ?

୬. "ନିଜେ ପିମ୍ପୁଡ଼ି ହୋଇଥିଲେ ତୁମେ କ'ଣ କରିଥାନ୍ତ" ସେହି ବିଷୟରେ ଦୁଇଧାଡ଼ି ଲେଖ ।

୭. କବିତାର ଯେଉଁ ପଦଟି ତୁମକୁ ଭଲ ଲାଗିଲା ତାହା ଆବୃତ୍ତି କର ।

୮. 'ବ' ଫଳା ଓ ସ୍କ ଅକ୍ଷର ଥାଇ ତୁମେ ଜାଣିଥିବା କେତୋଟି ଶବ୍ଦ ଲେଖ ।

**କ'ଣ ଶିଖିବେ**

ଭାଷା
- 'ଛ' ଚିହ୍ନିବେ ଓ ବ୍ୟବହାର କରିବେ ।

ପରିବେଶ
- ପକ୍ଷୀ ଓ କୀଟ ପତଙ୍ଗ ମାନେ ନିଜ ଖାଦ୍ୟ କିପରି ସଂଗ୍ରହ କରନ୍ତି ଜାଣିବେ ।
- ସମୟାନୁବର୍ତ୍ତୀ ହେବେ ।

**ପ୍ରସ୍ତୁତି**
- ପିଲାମାନଙ୍କୁ କ'ଣ ଭଲ ଲାଗେ କହିବେ ।
- ପିଲାମାନେ ବଡ଼ ହେଲେ କ'ଣ ହେବେ କହିବେ ।
- ପ୍ରଜାପତିର ଚିତ୍ର ଅଙ୍କନ କରିବେ ।
- ପ୍ରଜାପତି ଧରିବା ଅନୁଭୂତି ବର୍ଣ୍ଣନା କରିବେ ।

ଅଭ୍ୟାସ
- ପାଠ ଅନୁଯାୟୀ

ଉପକରଣ




- ଚକ୍, ରବର, ପେନ୍‌ସିଲ୍
- ଭଙ୍ଗା ଚୁଡ଼ି (୪ ପ୍ରକାର ରଙ୍ଗ)
- ତେନ୍ତୁଳି ମଞ୍ଜି ୪ ଫାଳ/ କଉଡ଼ି
- ପ୍ରଶ୍ନ କାର୍ଡ଼
- ୪ ଜଣ ଖେଳିବେ ।
- ତେନ୍ତୁଳି ମଂଜି ୪ଖଣ୍ଡକୁ ଏକାଠି ପକାଇବେ । ସବୁ ଓଲଟା ପଡ଼ିଲେ ୪ ପଏଣ୍ଟ ସବୁ ସିଧା ପଡ଼ିଲେ (ଧଳା ପାଖ) ୮ ପଏଣ୍ଟ ହେବ । ଗୋଟିଏ ସିଧା ୨, ୩ ପଡ଼ିଲେ ୧, ୨, ୩ ପଏଣ୍ଟ ହେବ ।

**ଦଳଗତ କାର୍ଯ୍ୟ**

ପଦ ଗୁଡ଼ିକ ଅଭିନୟ କରି ବୋଲିବେ ।
- ପିମ୍ପୁଡ଼ି କହିଥିବା ପଦ
- କଜଳପାତି କହିଥିବା ପଦ
- ଜଗୁନୀ କହିଥିବା ପଦ
- ଜଗୁନୀ କ'ଣ ପ୍ରତିଜ୍ଞା କଲା ଓ କାହିଁକି କଲା ଦଳଗତ ଆଲୋଚନା ଓ ଉପସ୍ଥାପନ କରିବେ ।

**ପ୍ରକଳ୍ପ**
- ପିମ୍ପୁଡ଼ି, ଅସରପା, କ'ଣ ସବୁ ଖାଆନ୍ତି ତାଲିକା ।

**ପ୍ରଶ୍ନ ସେଟ୍**

ସେଟ୍-୧
- ବିଦ୍ୟାଳୟରେ ହେଉଥିବା ଗୋଟିଏ କାମର ନାମ କହ ।
- ତୁମ ପ୍ରଧାନ ଶିକ୍ଷକଙ୍କ ନାମ କ'ଣ ?
- ଗୋଟିଏ ଖବର କାଗଜର ନାମ କହ ।
- ମଶା କାମୁଡ଼ିଲେ କି ରୋଗ ହୁଏ ?

ସେଟ୍-୨
- ବିଦ୍ୟାଳୟରେ ଥିବା ଗୋଟିଏ ଚିତ୍ରର ନାମ କହ ।
- ପବନ ଯାହାର ଆହାର
  ଖାଏ ଗୋଇଠା ପାହାର - କିଏ ?
- ନଖ କାହିଁକି କାଟିବା ?
- ହକି ଖେଳ କେତେ ଜଣଙ୍କ ଭିତରେ ହୁଏ ?

ସେଟ୍-୩
- ବିଦ୍ୟାଳୟକୁ କେତେବେଳେ ଯିବା ?
- ମାଆର ଭାଇକୁ କ'ଣ କହିବା ?
- ଆମେ ନୂଆ ଲୁଗା କେବେ ପିନ୍ଧୁ ?
- ଜାତୀୟ ପତାକାରେ କି କି ରଙ୍ଗ ଥାଏ ?

- ୪,୮ ପଡ଼ିଲେ ୨ଥର ପକାଇବାର ସୁଯୋଗ ରହିବ ।
- ୪ ଜଣଙ୍କର ୪ ପ୍ରକାର ଜିନିଷ/ ୪ ପ୍ରକାରର ରଙ୍ଗର ଜିନିଷ ରହିବ ।
- ଜଣେ ପକାଇଲା ପରେ ଡାହାଣରେ ବସିଥିବା ପିଲା ପକାଇବ ଓ ଏହିପରି ଖେଳ ଆଗକୁ ଯିବ ।
- ନିଜ ଉଠିବା ଘରର ବାମ ପାଖରେ ଥିବା ଘର ଭିତର ଦେଇ ଜିନିଷ ଭିତରକୁ ଯିବ ଓ ସବୁ ଜିନିଷ ମଝି ଛକରେ ପହଞ୍ଚିଗଲେ ସେ ବିଜୟୀ ହେବ ।
- ୮ ସେଟ୍ ପ୍ରଶ୍ନ ପତ୍ର ଦିଆଯିବ । ପ୍ରତ୍ୟେକ ସେଟ୍‌ରେ କିଛି ପ୍ରଶ୍ନ ରହିବ । କାର୍ଡ଼ର ପଛପଟେ ସେଟ୍ ସଂଖ୍ୟା ଲେଖା ହେବ । ଖେଳ ସମୟରେ ପ୍ରଶ୍ନ କାର୍ଡ଼ ଓଲଟା ହୋଇ ରହିବ ।

ଖେଳିବା କିପରି

- ଖେଳ ଆରମ୍ଭ ପାଇଁ ତେନ୍ତୁଳି ମଞ୍ଜି ପକାଇବେ ।
- ୪, ୮ ପଡ଼ିଲେ ଚୁଡ଼ି ଛକକୁ ଯିବ ଓ ସେ ଚୁଡ଼ି ଚଳେଇ ପାରିବ ।
- ଗୋଟିଏ ୮ ପଡ଼ିଲେ ୨ଟି ଚୁଡ଼ି ଉଠିବ ।
- ଉଠିଲା ପରେ ଯେତେ ପଏଣ୍ଟ ପଡ଼ିବ ସେଇ ସଂଖ୍ୟକ ପ୍ରଶ୍ନ ସେଟ୍‌ରୁ ପ୍ରଶ୍ନ କାର୍ଡଟି ଟାଣିବ । ପ୍ରଶ୍ନର ଉତ୍ତର ଦେବ ।
- ଉତ୍ତର ଦେଇ ପାରିଲେ ସେତିକି ପଏଣ୍ଟ ଆଗକୁ ଯିବ ଓ ଦେଇ ନପାରିଲେ ସେଇଠି ରହିବ ଓ ପୁଣିଥରେ ସୁଯୋଗ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବ ।

ସେଟ୍-୪
- ତୁମ ପ୍ରଧାନ ଶିକ୍ଷକଙ୍କର ନାମ କ'ଣ ?
- ସପ୍ତାହର କେଉଁ ଦିନ ଛୁଟି ଦିନ ?
- ଉପର ଶ୍ରେଣୀ ପିଲାଙ୍କୁ କ'ଣ ଡାକିବା ?
- କବାଡ଼ିରେ କେତେ ଜଣ ଖେଳନ୍ତି ?

ସେଟ୍- ୫
- ବିଦ୍ୟାଳୟରେ ଖେଳିଥିବା ଗୋଟିଏ ଖେଳର ନାମ କହ ।
- ଆମ ବିଦ୍ୟାଳୟରେ କେଉଁ ପ୍ରାର୍ଥନା କରୁ ?
- କ୍ରିକେଟ୍ ଖେଳରେ କେତେଜଣ ଖେଳନ୍ତି ?
- ହଳଦୀ ବସନ୍ତର ରଙ୍ଗ କିପରି ?

ସେଟ୍-୬
- ବିଦ୍ୟାଳୟରେ କ'ଣ କ'ଣ ଅଛି ସେଥିରୁ ଗୋଟିକର ନାମ କହ ।
- ଖବର କାଗଜରେ କି କି ଖବର ବାହାରେ ?
- ଫୁଟ୍‌ବଲ୍ ଖେଳରେ କେତେଜଣ ଖେଳନ୍ତି ?
- ପିମ୍ପୁଡ଼ିର କେତୋଟି ଗୋଡ଼ ?

ସେଟ୍ -୭
- ଘରେ କି କି କାମ କରି ପାରିବା ?
- ଗୋଟିଏ ମିଠା ଜିନିଷର ନାମ କହ ।
- ମାଛ କେଉଁଠୁ ଧରା ହୁଏ ?
- ଖାଇବା ଆଗରୁ ହାତ ଧୋଇବା କାହିଁକି ?

ସେଟ୍-୮
- ଯେକୌଣସି ଗୋଟିଏ କାମର ନାମ କହ ।
- କିଣା ବିକା କାମ କେଉଁଠି ହୁଏ ?
- ବାଲି ସିମେଣ୍ଟ କେଉଁ କାମରେ ବ୍ୟବହାର ହୁଏ ?
- ପାଠ ପଢ଼ା କାମ କେଉଁଠି ହୁଏ ?

## ଷାଣ୍ମାସିକ ପରୀକ୍ଷା

| ପାଠ-୧୪ | |

ସମୟ - ୧୦ ପିରିୟଡ୍

## ଦେଖତ ପିନ୍ଧି ଦେଖ

ଦୋକାନରେ ତା'ର ଘୂରଇ ପଙ୍ଖା
ବୁଢ଼ା ହନୁ ବସି ଗଢୁଛି ଶଙ୍ଖା ।
ଛପି ଛପି ଆସି ଶଙ୍ଖୀ ବିଲେଇ
ପଟେ ଶଙ୍ଖା ନେଇ ଗଲା ପଳାଇ ।
ଅକଲ୍ ଗୁଡୁମ୍ ହେଲା
ପଟିଏ ଶଙ୍ଖାକୁ ଦୁଇଟି ହାତରେ
କେମିତି ପିନ୍ଧିବ ଭଲା ?



## ଅଭ୍ୟାସ

୧. ଚିହ୍ନିକି ଲେଖ ।

(କ)



(ଖ)



୨. କହ ଓ ଲେଖ ।

ଅକଲ୍ ଗୁଡୁମ୍ ହେଲା

ପଟିଏ ______ କୁ ଦୁଇଟି ହାତରେ
କେମିତି ପିନ୍ଧିବ ଭଲା ।

୩. ଗପଟିର ଚିତ୍ରରେ ବିଲେଇ କ'ଣ କଲା ଲେଖ ।

______

______

______

୪. କିଏ ଖଟ ତଳେ ଅଛି ?

______



୫. ଲେଖ ।

(କ) ବୁଢ଼ାହନୁ______ ତିଆରି କରୁଥିଲା ।

(ଖ) ଛପି ଛପି______ ବିଲେଇ ଆସିଲା ?

୬.(କ) କିଏ କାହା ପାଖକୁ ଯିବ, ତୀର ଚିହ୍ନ (→) ଦିଅ ।



ମାଟିକାମ

ଚାଷକାମ

କାଠକାମ

ଡାକ୍ତର



୭. ଆସ କାଠରୁ କ'ଣ ତିଆରି ହୁଏ ଲେଖିବା ।




ଆସ ଗାଈ କ୍ଷୀରରୁ କ'ଣ ତିଆରି ହୁଏ ଲେଖିବା ।




୮. କିଏ କେଉଁ ପଦାର୍ଥ ବା ଜିନିଷରୁ ତିଆରି, ଆସ ଜାଣିବା ।



**କ'ଣ ଶିଖିବେ**

ଭାଷା
- 'ଙ୍ଖ' ଯୁକ୍ତାକ୍ଷରକୁ ଚିହ୍ନିବେ, ପଢ଼ିବେ ଓ ଲେଖିବେ ।

ପରିବେଶ
- ବିଭିନ୍ନ ଜୀବିକା ବିଷୟରେ କହିପାରିବେ ।

**ସୂଚନା**

- 'ଙ୍ଖ' ଯୁକ୍ତାକ୍ଷର ବାରମ୍ବାର ବ୍ୟବହାର ହୋଇ ବିଷୟଟି ଲେଖାହୋଇଛି ।
- ଏହି ପାଠରେ ପିଲାଙ୍କ ଅନୁଭୂତିକୁ ଅଧାରିତ କରି ଜୀବିକା ଉପରେ ଆଲୋଚନା କରାଯାଇଛି ।

**ପ୍ରସ୍ତୁତି**

- ମୁନାରେ ମୁନା ତୋ' ବାପା କ'ଣ କରନ୍ତି ?
- ପିଲାମାନେ ଗୋଲେଇରେ ଠିଆହେବେ । ଗୀତଟିକୁ ଗାଇବେ ଓ ନିଜ ବାପା କ'ଣ କାମ କରନ୍ତି କହିବେ । ପିଲାଟି କହିଲା ପରେ ପୁଣି ତା' ସାଙ୍ଗନାମ କହି ଗୀତଟି ଗାଇବ । ଏହି ପରି କାମଟି ଆଗକୁ ଯିବ ।
- ତୁମ ଘରେ କିଏ କ'ଣ କରନ୍ତି ?
  ପିଲାମାନେ ଗୋଲରେ ବସିବେ । କାଗଜ ବଲଟିଏ ଗଡ଼େଇ ଦେବେ । ଯାହା ପାଖରେ ବଲ୍‌ଟି ପହଞ୍ଚିବ, ତାଙ୍କ ଘରେ କିଏ କ'ଣ କରନ୍ତି କହିବେ । ଏହିପରି ଖେଳଟି ଚାଲିବ ।

| କାଠ / ମାଟି | ଏଥିରୁ କ'ଣ କ'ଣ ତିଆରି ହୁଏ କହିବେ । |
|---|---|

**ଆମେ ଜାଣିବା**

ବିଭିନ୍ନ ସରକାରୀ ସଂସ୍ଥାରେ ବିଭିନ୍ନ ଜୀବିକା ପାଇଁ ବିଭିନ୍ନ ସରକାରୀ ସାହାଯ୍ୟ ମିଳୁଛି ।

ଚାଷକାମ, ମାଟିକାମ ଏ ସବୁ କାମ ବ୍ୟତୀତ ଘଣ୍ଟା, ଟି.ଭି, କୁଲର ମରାମତି, ସୁନାକାମ, ଖଲିଦନା, ଦହି ତିଆରି, ନଡ଼ିଆକତା ଓ ବାଉଁଶ କାମ ଗୋଟିଏ ଗୋଟିଏ ଜୀବିକା ।

**ଦଳଗତ କାର୍ଯ୍ୟ**

ମୂକ ଅଭିନୟ

ଗୋଟିଏ ଦଳ ଯେକୌଣସି ଜୀବିକାର ଅଭିନୟ କରିବେ । ଅନ୍ୟ ଦଳ ସେ କାମଟି କ'ଣ କହିବେ ।

**ପ୍ରକଳ୍ପ କାର୍ଯ୍ୟ**

- ତୁମ ଗାଁରେ ଲୋକମାନେ କେଉଁ କେଉଁ କାମ କରି ଜୀବିକା ନିର୍ବାହ କରନ୍ତି ତା'ର ଏକ ତାଲିକା କର ।
- ତୁମ ଗାଁ ଚାଷୀଟିଏ କ'ଣ କ'ଣ ଫସଲ କରେ, ତାକୁ ସେ ବିଷୟରେ ପଚାରି ଏକ ବିବରଣୀ ପ୍ରସ୍ତୁତ କର ।

**ମାଇକ୍ରୋଫୋନ କାର୍ଯ୍ୟ**

ପିଲାମାନେ ଗୋଲରେ ବସିବେ । କାଗଜର ମାଇକ୍ରୋଫୋନ୍‌ରେ ପିଲା ତା' ଘରର ଅନ୍ୟ ସଦସ୍ୟ କ'ଣ କାମ କରନ୍ତି କହିବେ ।

**ଦଳଗତ କାର୍ଯ୍ୟ**

- ଦଳରେ ବିଭିନ୍ନ ପ୍ରକାର ଶସ୍ୟ, ଫଳ, ଫୁଲ ରଖାଯିବ । ଗୋଟିଏ ପିଲା ଜିନିଷକୁ ଛୁଇଁଲେ ଅନ୍ୟପିଲା କେଉଁଠି ହୁଏ କହିବେ ।

**ଉପକରଣ**

ବିଭିନ୍ନ ଜୀବିକାର ଚିତ୍ର, ବିଭିନ୍ନ ପ୍ରକାର ଶସ୍ୟ, ଫଳ ଓ ଫୁଲ ।

পাঠ-১৫

# ପାଇଲା ପାନେ

ସମୟ - ୮ ପିରିୟଡ୍

ପଲ୍ଲବୀ ଓ ପ୍ରହ୍ଲାଦ ଏକା ଶ୍ରେଣୀରେ ପଢ଼ନ୍ତି । ସେମାନେ ବିପ୍ଳବର ବଗିଚାରେ ଖେଳନ୍ତି । ଦିନେ ଦେଖିଲେ, ହଳଦିବସନ୍ତଟିଏ ଚମ୍ପା ଗଛରେ ବସା ବାନ୍ଧୁଛି । ବସା ତିଆରି କାମଟି ଅଧା ହୋଇଥାଏ । ଗୋଟିଏ ମାଙ୍କଡ଼ ତା'କୁ ଭାଙ୍ଗିଦେଲା ।

ଏମିତି କିଛି ଦିନ ଚାଲିଲା । ହଳଦିବସନ୍ତ ଅକ୍ଳାନ୍ତ ପରିଶ୍ରମ କରି ପୁଣି ବସା ତିଆରି କରୁଥାଏ । ମାଙ୍କଡ଼ଟି ତା'କୁ ଭାଙ୍ଗୁ ଥାଏ । ଦିନେ ହଳଦିବସନ୍ତ ବିରୁଡ଼ି ବସାଟିଏ ଆଣିଲା । ତାକୁ ନିଜ ବସା ତଳେ ରଖିଦେଲା । ମାଙ୍କଡ଼ ତା'କୁ ଯେମିତି ଭାଙ୍ଗିଛି, ଦଳ ଦଳ ବିରୁଡ଼ି ବାହାରିଲେ । ତା'କୁ ଗୋଡ଼େଇ ଗୋଡ଼େଇ କାମୁଡ଼ିଲେ ।

ମାଙ୍କଡ଼ ପ୍ରାଣ ବିକଳରେ ଡେଇଁ ଡେଇଁ ପଳାଇଲା । ପଲ୍ଲବୀ ଓ ପ୍ରହ୍ଲାଦ ଖୁସିରେ ତାଳି ମାରି କହିଲେ ।

ମାଙ୍କଡ଼ ପାଇଲା ପାନେ ।



## ଅଭ୍ୟାସ

୧. ପଢ଼ ଓ ଲେଖ ।

ମଲ୍ଲ-
ପଲ୍ଲୀ-
ଦିଲ୍ଲୀ-
ଶୁକ୍ଳ-
କ୍ଳାନ୍ତ-
ଅମ୍ଳ-
ଆହ୍ଲାଦ-

୨. ବିନ୍ଦୁ ଯୋଡ଼ି ଚିତ୍ର କର ଓ ଏହା କ'ଣ ଲେଖ ।



୩. ଗାର ଦେଇ ଶବ୍ଦ ଗଢ ଓ ବାକ୍ସ ଭିତରେ ଶବ୍ଦଗୁଡ଼ିକୁ ଲେଖ ।

ଯେପରି—କ୍ଳେଶ, ପଲ୍ଲବୀ

| | | |
|---|---|---|
| ମ | ଶ | ସ |
| କ୍ଳେ | କ | ବୀ |
| ଉ | ଲ୍ଲା | ଦ |
| ପ | ଲ୍ଲ | |
| ପ | ଲ୍ଲ | |
| ଅ | ଲ୍ଲୀ | |
| ଶ୍ଳୋ | ହ୍ଲ | |
| ଗେ | ମ୍ଳ | |
| ପ୍ର | ହ୍ଲା | |

କ୍ଳେଶ
ପଲ୍ଲବୀ

୪. ପତ୍ର ଯୋଡ଼ ଶବ୍ଦ ଗଢ଼ ।

ଯେପରି–

ମଲ୍ଲୀ



୫.(କ) କାହାଣୀରେ ଥିବା ଗଛ,ଲତା,ପଶୁ, ପକ୍ଷୀ ଓ ପ୍ରାଣୀଙ୍କୁ ଖୋଜ ଓ ଲେଖ ।

ଲେମ୍ବୁ ________, ________, ________, ________

(ଖ) ବଗିଚାରେ ଆଉ କି କି ଗଛ ରହେ ?

________ ________ ________ ________ ________

________ ________ ________ ________ ________

________ ________ ________ ________ ________

(ଗ) ଜଙ୍ଗଲରେ କି କି ଗଛ ରହେ ?

ଶାଳ ପିଆଶାଳ

________ ________ ________ ________ ________

________ ________ ________ ________ ________

________ ________ ________ ________ ________

୬. କାହାଠାରୁ କ'ଣ ମିଳେ- ଲେଖ ।

| ବଗିଚା ଗଛରୁ | ଜଙ୍ଗଲ ଗଛରୁ |
| --- | --- |
| ପିଜୁଳି | ମହୁଲ |

ক'ଣ ଶିଖିବେ

ଭାଷା ◆ 'ଲ' ଫଳା ( ◌୍ଲ ) ଓ 'ଳ' ( ◌୍ଳ )ଫଳା ଶିଖିବେ ।

ପରିବେଶ ◆ ବୃକ୍ଷଲତା ସମ୍ପର୍କରେ ଜାଣିବେ ।

ସୂଚନା ◆ ବସ୍ତୁ ଓ ଚିତ୍ରକାର୍ଡ଼ରୁ ଶବ୍ଦ ଓ ଶବ୍ଦରୁ 'ଳ' ଫଳା ଓ 'ଲ' ଫଳାର ଚିହ୍ନଟ ।

ପ୍ରସ୍ତୁତି

ଠିକ୍ ଠିକ୍ ଖେଳ

| ପିଲାମାନେ ଗୋଲ୍‌ରେ ବସିବେ । ଶିକ୍ଷକ ମଝିରେ ରହି ଖେଳାଇବେ । ଶିକ୍ଷକ ନାମ କହିବେ । ଶିକ୍ଷକ ଠିକ୍ କଥା କହିଲେ ପିଲାମାନେ ଠିକ୍ ଠିକ୍ କହି ଦୁଇଥର ଚୁଟକି ଫୁଟାଇବେ । ଶିକ୍ଷକ ଠିକ୍ କଥା କହି ନଥିଲେ ପିଲାଏ ଚୁପ୍ ରହିବେ । ଯିଏ ଠିକ୍ ଠିକ୍ କହି ଚୁଟକି ଫୁଟାଇବେ ସିଏ ମଝିକୁ ଆସି ଖେଳ ପରିଚାଳନା କରିବ । | | |
|---|---|---|
| ଶିକ୍ଷକ- | ବରଗଛ | ପିଲା- ଠିକ୍ ଠିକ୍ |
| | ଆମ୍ବଗଛ | ଠିକ୍ ଠିକ୍ |
| | ପିଜୁଳି ଗଛ | ଠିକ୍ ଠିକ୍ |

ପାଠ୍ୟ ବିଷୟରୁ କାମ

◆ ବସ୍ତୁ, ଚିତ୍ରରୁ ଏବଂ ପାଠରୁ 'ଲ' ଫଳା ଓ 'ଳ' ଫଳା ଯୁକ୍ତ ଶବ୍ଦ ବାଛି ସେଥିରୁ ଫଳା ଚିହ୍ନଟ, ପଠନ ଓ ଲିଖନ ।

◆ ବାଡ଼ି ବଗିଚାରେ କି କି ଗଛ ଦେଖିଛନ୍ତି କହିବେ ।

◆ 'ଲ' ଫଳା ଓ 'ଳ' ଫଳା ଥିବା ଶବ୍ଦ ଲେଖିବେ ।

◆ ଗଛମାନଙ୍କର ନାମ ଲେଖିବେ ।

ଅଭ୍ୟାସ ◆ ପାଠ ଅନୁଯାୟୀ

ଉପକରଣ ଚିତ୍ର କାର୍ଡ଼

ଦଳଗତ କାର୍ଯ୍ୟ

◆ ବିଦ୍ୟାଳୟର ଚାରିପଟେ ଥିବା ବିଭିନ୍ନ ଗଛ ଲତାର ନାମ ଲେଖିବେ ।




◆ ମାଥିସର ବ୍ୟବହାର କରିବେ ।

( ) ଅମୃତଭଣ୍ଡା

| ମ | ଲ | ଶ |
|---|---|---|
| କ | ଭ | ବ |
| ପ | ଗ | ଟ |

ବିଭିନ୍ନ ମାତ୍ରା, ଫଳା ଆଦି ଲଗାଇ ଶବ୍ଦ ଗଢ଼ ।

ଅନ୍ୟକାର୍ଯ୍ୟ ସାରଣୀ ପୂରଣ କର ।

| ଖାଉ ନଥିବା ଫଳ | ବାସନା ନଥିବା ଫୁଲ | ଖାଉଥିବାପତ୍ର |
|---|---|---|
| | | |

ପ୍ରକଳ୍ପ ପ୍ରତ୍ୟେକ ପିଲା ତାଙ୍କ ବାଡ଼ିରୁ ଯେକୌଣସି ଦୁଇଟି ପତ୍ର ତାର ଚାରିପାଖର ରେଖାକୁ ଖାତାରେ ଟାଣି ରଂଗ ଦେବେ ।

ମାଥିସ୍ ତିଆରି ହୋଇଥିବା ଶବ୍ଦ ଗୁଡ଼ିକର ଫ୍ଲାସ କାର୍ଡ଼ ତିଆରି

| ପତ୍ରର ଚିତ୍ର ଅଙ୍କନ | ଫୁଲ ଫଳର ଚିତ୍ର ଅଙ୍କନ |
|---|---|
| | |
| | |

ଉପକରଣ ମାଥିସ୍ ପାଇଁ ପ୍ରସ୍ତୁତି

ସମୟ - ୬ ପିରିୟଡ୍

ପାଠ-୧୬

# ଚାଲ ବୁଲିଯିବା ଗାଆଁରୁ ସହର



ଚିତ୍ର ଦେଖି କହ ଓ ଲେଖ । ଗାଆଁରେ କ'ଣ କ'ଣ ଅଛି ?



ଚିତ୍ର ଦେଖି କହ ଓ ଲେଖ । ସହରରେ କ'ଣ କ'ଣ ଅଛି ?

# ଅଭ୍ୟାସ

୧. ଗାଆଁରେ କ'ଣ କ'ଣ ଅଛି ?

ମନ୍ଦିର ________, ________, ________, ________,
________, ________, ________, ________ ।

୨. ସହରରେ କ'ଣ ଅଛି ?

ବସ୍ ________, ________, ________, ________,
________, ________, ________, ________ ।

୩. ତୁମ ଗାଆଁରେ କ'ଣ ନାହିଁ କହ ଓ ଲେଖ ।

________, ________, ________, ________ ।

୪. ରଙ୍ଗ ଦିଅ ।



୫. ଗାର ଟାଣି ସଜାଅ ।



୬. ଗାଆଁରେ କ'ଣ କ'ଣ ଅନୁଷ୍ଠାନ ରହିଛି ?

ଯେପରି -ବିଦ୍ୟାଳୟ

୭. ସହରରେ କ'ଣ କ'ଣ ଅନୁଷ୍ଠାନ ରହିଛି ?

୮. ଦେହ ଖରାପ ହେଲେ ଆମେ ________ କୁ ଯିବା ।

ଲଫାପା କିଣିବାକୁ ________ କୁ ଯିବା ।

ଜାମା କିଣିବାକୁ ________ କୁ ଯିବା ।

ବହି କିଣିବାକୁ ________ କୁ ଯିବା ।

ଜୋତା କିଣିବାକୁ ________ କୁ ଯିବା ।

୯. ମାଟିରେ ତିଆରି କର ।

କଦଳୀ, ଗୋଲି, ଦୀପ, ଭେଣ୍ଡି, ହାତୁଡ଼ି ।

**କ'ଣ ଶିଖିବେ**

ଭାଷା ◆ ପିଲାମାନେ ସରଳ ବାକ୍ୟ ଲେଖି ପାରିବେ ।

ପରିବେଶ ◆ ଗାଁ ଓ ସହରର ବିଭିନ୍ନ ଅନୁଷ୍ଠାନ ବିଷୟରେ ଜାଣିବେ ।

**ସୂଚନା**

- ◆ ଗାଁ ଓ ସହରର ଚିତ୍ର ଦିଆଯାଇଛି ।
- ◆ ପିଲାମାନେ ଛବିରୁ ସମାନତା ଓ ପାର୍ଥକ୍ୟ କହିବେ ଓ ଲେଖିବେ ।
- ◆ ଗାଁ ଓ ସହରର୍ ବିଭିନ୍ନ ଅନୁଷ୍ଠାନରେ କ'ଣ କ'ଣ ହୁଏ, ତାହା ଆଲୋଚନା କରିବେ ।

**ପିଲାଙ୍କ କାମ**

- ◆ ଗାଁ ଓ ସହରର ଚିତ୍ର ଦେଖି କ'ଣ ଅଛି କହିବେ । ଚିତ୍ରରୁ ସମାନତା ଓ ପାର୍ଥକ୍ୟ (ଗାଁ ଓ ସହର ମଧ୍ୟରେ) କହିବେ ।

**ଦଳଗତ କାର୍ଯ୍ୟ**

- ◆ ପିଲାମାନେ ଦେଖିଥିବା ସହର, ଗାଆଁର ଅନୁଭୂତି ବର୍ଣ୍ଣନା କରିବେ ।

**ପ୍ରକଳ୍ପ**

- ◆ ଗାଁରେ ଲୋକମାନେ କିପରି ଜୀବନ ନିର୍ବାହ କରନ୍ତି ତୁମେ ତୁମ ବାପା ମାଆଙ୍କ ଠାରୁ ପଚାରି ଏକ ବିବରଣୀ ପ୍ରସ୍ତୁତ କର ।

ପାଠ-୧୭

# ଓଃ ମୁଁ କ'ଣ କରିବି

ସମୟ - ୧୯ ପିରିୟଡ୍

ରେଖା ଓ ବିଲେଇ ନାନୀ ଭାରି ସାଙ୍ଗ । ତାଙ୍କର ଆଉ କେହି ବି ନଥିଲେ । ରେଖା ଦିନେ ବେମାରରେ ପଡ଼ିଲା । ଦିନକୁ ଦିନ ତା' ଦେହ ବହୁତ ଖରାପ ହେଲା । ସୁସ୍ଥ ହେଲା ନାହିଁ । ବିଲେଇ ନାନୀ ଯେତେ ଯତ୍ନ କଲେ ମଧ ତା'ର ଦେହ ଭଲ ହେଲା ନାହିଁ । ଶେଷରେ ବିଲେଇ ଡାକ୍ତରଙ୍କୁ ଖୋଜିବା ପାଇଁ ଗଲା । କିଛି ବାଟ ଗଲା ପରେ ଗୋଟିଏ ପକ୍କା ଘର ଦେଖିଲା ।






ବିଲେଇ ପଚାରିଲା- 'ଏଠାରେ କ'ଣ ହୁଏ ?' ଲୋକଟି କହିଲା- ଏହା ପୋଷ୍ଟ ଅଫିସ । ଏଠାରେ ପୋଷ୍ଟ କାର୍ଡ଼, ଲଫାପା, ଟେଲିଗ୍ରାମ ଫର୍ମ ମିଳେ । ଦୂର ଜାଗାକୁ ଏଠାରୁ ଟଙ୍କା ପଠାଯାଏ । ବିଲେଇ କହିଲା- ମୋରତ ଡାକ୍ତର ଦରକାର । ସେଠାରୁ ସେ ଆଗକୁ ଗଲା । ଗୋଟାଏ ବୁଢ଼ା ପକ୍କାଘରୁ ବାହାରୁ ଥିଲା । ଡାକ୍ତର ବାବୁ ଅଛନ୍ତି କି ବୋଲି ପଚାରିଲା ।

ଏହା ତ ବ୍ୟାଙ୍କ, ଲୋକମାନେ ଏଠାରେ ଟଙ୍କା ରଖନ୍ତି, ସୁଧ ପାଆନ୍ତି, ଦରକାର ବେଳେ ଟଙ୍କା ବାହାର କରନ୍ତି ।



ପୁଣି ଅଳ୍ପ ବାଟ ଚାଲିଲା । ଦେଖିଲା କିଛି ଲୋକ ଛିଡ଼ା ହୋଇଥାନ୍ତି । ସେଠାରେ ପଚାରିଲା । ସେମାନେ କହିଲେ-ଏହା ଗ୍ରାମପଞ୍ଚାୟତ ଅଫିସ୍ । ବିଲେଇ କାବା ହୋଇ ଦେଖିଲା ।

ଏଠାରେ ଗାଁ'ର ଭଲ ମନ୍ଦ ବୁଝାଯାଏ । ରାସ୍ତାଘାଟ ମରାମତି, ପରିବେଶ ସଫା ସୁତରା ରଖିବା, ପୋଖରୀ ଖୋଳିବା ଆଦି କାମ ଏଠାରେ କରାଯାଏ । ଏଠାରେ ସରପଞ୍ଚ ରହନ୍ତି । ଡାକ୍ତର ନାହାନ୍ତି ।

ବିଲେଇ ମନଦୁଃଖରେ ପୁଣି କିଛି ବାଟ ଚାଲିଲା । କିଛି ଲୋକ ବସିଥିବାର ଦେଖିଲା ।



ସେଠାରେ ମଧ ପଚାରିଲା । ସେମାନେ କହିଲେ- ଏହା ପାଠାଗାର । ଏଠାରେ ବିଭିନ୍ନ ପ୍ରକାରର ବହି ଓ ଖବରକାଗଜ ମିଳେ । ଖବର କାଗଜ ପଢ଼ି ଦେଶ ବିଦେଶର କଥା ଜାଣିହୁଏ ।

ତା'ପରେ ଆହୁରି ଆଗକୁ ଗଲା । ବହୁତ ଭିଡ଼ ହୋଇଥିଲା । ପାନ ଦୋକାନୀକୁ ପଚାରିଲା-ସେ କହିଲା- ଏହା ହାଟ ବଜାର । ଏହା ସପ୍ତାହରେ ଥରେ ବସେ । ଏଠାରେ ବହୁତ ରକମ ଜିନିଷ ମିଳେ ।

କାନ୍ଥରେ ଆଉଜି ଛିଡ଼ା ହେଲା । ପାଣି ପିଇ ଆଗକୁ ଗଲା । ସାଇକେଲରେ ବାପ ଓ ଝିଅ ଯାଉଥିଲେ । ତାଙ୍କୁ ପଚାରିବାରୁ ସେମାନେ କହିଲେ- ଆମେ ଡାକ୍ତରଖାନା ଯାଉଛୁ । ଆମ ସାଙ୍ଗରେ ଆସ । ସେମାନେ ଡାକ୍ତରଖାନାରେ ପହଞ୍ଚିଲେ ।



# ଅଭ୍ୟାସ

୧. ବିଲେଇ କେଉଁ ସବୁ ସ୍ଥାନକୁ ଯାଇଥିଲା, କ୍ରମରେ ବାକ୍ସ ମଧ୍ୟରେ ସଜାଅ ।

ଗ୍ରାମ ପଞ୍ଚାୟତ
ବ୍ୟାଙ୍କ
ହାଟବଜାର
ଡାକ୍ତରଖାନା
ପାଠାଗାର





୨. ମୁଣି ଭିତରେ କ'ଣ ସବୁ ଥିବ, ଲେଖ ।



ପୋଷ୍ଟ ଅଫିସ ବ୍ୟାଗ୍



ଡାକ୍ତରଖାନା ବ୍ୟାଗ୍

___________

___________

୩. ଗୋଲ ଭିତରେ ଥିବା ଅକ୍ଷରମାନଙ୍କ ସହିତ ଗୋଲ ବାହାରେ ଥିବା ସଂପର୍କିତ ଶବ୍ଦକୁ ଗାରଦେଇ ବାଛ ଓ ଲେଖ ।

ସୁସ୍ଥ ଗଳ୍ପ
ଯତ୍ନ ସ୍ୱାର୍ଥ
ଅବସ୍ଥା




ରତ୍ନ
ଶିଳ୍ପ ସ୍ଥାନ
ସ୍ୱଳ୍ପ ସ୍ଥାୟୀ

| ସ୍ଥ | ଳ୍ପ | ତ୍ନ |
|---|---|---|
| | | |

୪. 'ଡାକ୍ତରଖାନା' ଏହି ଶବ୍ଦରେ ଥିବା ଅକ୍ଷରମାନଙ୍କୁ ନେଇ କେତେ ଗୁଡ଼ିଏ ଶବ୍ଦ ହୋଇପାରିବ, ଲେଖ । ଯେପରି- ଡର, ନର ।

__________ __________ __________ __________

୫. ତଳେ ଥିବା ଶବ୍ଦମାନଙ୍କ ମଧ୍ୟରୁ କେଉଁଟି ଅଲଗା, ଆସ ଖୋଜିବା ଓ ତା' ତଳେ ଗାର ଦେବା ।

(କ) ପୋଷ୍ଟକାର୍ଡ, ଟେଲିଗ୍ରାମ୍, ପୋଲିସ, ଲଫାପା ।

(ଖ) ଟଙ୍କା, ଋଣ, ଠିକ୍, ସୁଧ ।

(ଗ) ମନ୍ଦିର, ମସ୍‌ଜିଦ୍, ହୋଟେଲ, ଗୁରୁଦ୍ୱାର ।

୬. ଲେଖ ।

ପତ୍ନୀ-
ସ୍ଥାୟୀ-
ଅଳ୍ପ-

କ'ଣ ଶିଖିବେ

ଭାଷା ◆ ଘ୍ଘ, ନ୍ର, ଚ୍ଚ ଯୁକ୍ତାକ୍ଷର ଚିହ୍ନିବେ ଓ ବ୍ୟବହାର କରିବେ ।

ପରିବେଶ ◆ ଆମ ଅଞ୍ଚଳର ସର୍ବସାଧାରଣ ଅନୁଷ୍ଠାନ ବିଷୟରେ ଜାଣିବେ । ଯଥା- ବ୍ୟାଙ୍କ, ଡାକଘର, ଗ୍ରାମ ପଞ୍ଚାୟତ ଅଫିସ୍

ସୂଚନା

- ◆ ଚିତ୍ର ଗୁଡ଼ିକରେ ବିଭିନ୍ନ ଅନୁଷ୍ଠାନର କାମ ଦିଆଯାଇଛି ।
- ◆ ଘ୍ଘ, ନ୍ର, ଚ୍ଚ, କ୍ର ଗପ ମାଧ୍ୟମରେ ଚିହ୍ନଟ କରିବାର ସୁଯୋଗ ଅଛି ।

ପ୍ରସ୍ତୁତି

ସମ୍ପର୍କ ଯୋଡ଼

ପିଲାମାନେ ଗୋଲ୍‌ରେ ଠିଆ ହେବେ । ଶିକ୍ଷକ ସୂଚନା ଦେବେ- ମୁଁ ଯେଉଁ ଶବ୍ଦ କହିବି ସେହି ଶବ୍ଦ ସମ୍ପର୍କିତ ଶବ୍ଦ ପିଲାଏ କହିବେ । ଶବ୍ଦଗୁଡ଼ିକର ପୁନରାବୃତ୍ତି ହେବ ନାହିଁ । ଯେ କହି ପାରିବ ନାହିଁ ସେ ମଝିକୁ ଆସି ଖେଳକୁ ଆଗେଇ ନେବ । ଯଥା-

ଶିକ୍ଷକ କହିବେ:-

ମନ୍ଦିର → ଫୁଲ, ନଡ଼ିଆ

ଡାକଘର → ଚିଠି, ମୋହର

ଦଳଗତ କାର୍ଯ୍ୟ

ମୁଁ ମାଗିବି ଯାହା ତୁମେ ଦେବ ତାହା ।

ପିଲାମାନେ ଦଳରେ ବସିବେ । ବିଭିନ୍ନ ଫ୍ଲାସ୍ କାର୍ଡ଼ରେ ବିଭିନ୍ନ ଅନୁଷ୍ଠାନ ସମ୍ପର୍କିତ କାର୍ଯ୍ୟ ଓ ଜିନିଷର ନାମ ଲେଖା କାର୍ଡ଼ ଦିଆଯିବ । ଶିକ୍ଷକ ଯାହା ମାଗିବେ ସେମାନେ ତାହା ଦେବେ ।

ପ୍ରକଳ୍ପ

ତୁମ ଗାଁ କିମ୍ବା ଗାଁର ପାଖରେ ଥିବା ଡାକ ତାଙ୍କ ଘରକୁ ଯାଇ ବିଭିନ୍ନ ପ୍ରକାରର ଡାକ ଟିକଟ ସଂଗ୍ରହ କର ଓ ସେଠାରେ କ'ଣ ଦେଖିଲ ତାହାର ଏକ ବିବରଣୀ ପ୍ରସ୍ତୁତ କର ।

ଉପକରଣ

ଫ୍ଲାସ କାର୍ଡ଼, ଚିଠି, କାର୍ଡ଼ବୋର୍ଡ଼, ଚିଠିବାକ୍ସ, ଅନ୍ତର୍ଦ୍ଦେଶୀୟ ପତ୍ର

ଡାକବାଲା

ମାଟିଆ ଖାକି ପୋଷାକ ପିନ୍ଧି
ସାଇକେଲରେ ଘଣ୍ଟି ବଜାଇ
ଚିଠି ଆସିଛି ନିଅରେ ଭାଇ
କରଇ ସିଏ ହାଲ୍ଲା
କୁହ ସେ କିଏ ଭଲା ?
ଡାକଘରକୁ ଯାଏ ସେ ନିତି
ମୋହର ମାରେ ଚିଠିରେ ବସି

ଘରକୁ ଘର ଯାଏ ସେ ନିତି
ଠିକଣା ଦେଖି ଦିଏ ସେ ଚିଠି
ସବୁରି ମନ କରଇ ଖୁସି
କାମରେ ନାହିଁ ଢ଼ିଲା
କୁହ ସେ କିଏ ଭଲା ?

(ପିଲାମାନେ ଶ୍ରେଣୀରେ ଦଳଗତ ଭାବେ ଅଭିନୟ କରି ଗୀତଟି ଗାଇବେ ।)

# ଚତୁର୍ଥ ଏକକ ପରୀକ୍ଷଣ

ପାଠ-୧୮



# ତୁ କେଉଁଠି ଅଛୁ



ଗାଆଁଟିର ନାଁ ସୁବର୍ଣ୍ଣପୁର । ସେଠି ବଶିଷ୍ଠ ନାମରେ ଜଣେ ଲୋକ ଥିଲେ । ତାଙ୍କ ଝିଅର ନାଁ ପୁଷ୍ପା ।

ପୁଷ୍ପା ସବୁଦିନ ସାଙ୍ଗମାନଙ୍କ ସହ ମହାନଦୀକୁ ଗାଧୋଇ ଯାଏ । ସେଦିନ ଗାଧୋଇସାରି ଫେରୁଥାଏ । ହଠାତ୍ ତା' ସାଙ୍ଗ ବାସନ୍ତୀର ଆଖି ପୁଷ୍ପାର କାନ ଉପରେ ପଡ଼ିଲା । ବାସନ୍ତୀ କହିଲା- "ଆରେ, ତୋ କାନଫୁଲଟି କୁଆଡ଼େ ଗଲା ? କେଉଁଠି ପକାଇଦେଲୁ ।" ସୁନାରେ ତିଆରି କାନଫୁଲଟି କେଉଁଠି ପଡ଼ିଯାଇଥିବାରୁ ପୁଷ୍ପା ବ୍ୟସ୍ତ ହେଲା ।

ସମସ୍ତେ କାନଫୁଲଟିକୁ ଖୋଜିବାରେ ଲାଗିଲେ । ନିଷ୍ଠାର ସହ ଖୋଜିଲେ ମଧ୍ୟ ପାଇଲେ ନାହିଁ ।

ଏମାନଙ୍କର ଖୋଜିବାର ବ୍ୟସ୍ତତା ଦେଖି ଗଛମାନଙ୍କର ମନଦୁଃଖ ହେଲା । ସେମାନେ ଏକଜୁଟ ହେଲେ । ଖୋଜିବାରେ ସାହାଯ୍ୟ କରିବା ପାଇଁ କଥାବାର୍ତ୍ତା ହେଲେ ।



ତାଳଗଛଟି କହିଲା- ମୁଁ ଟିକିଏ ଡେଙ୍ଗା ଅଛି । ଦେଖେଁ ବାହାରୁ କିଏ ଆସି ନେଇଗଲା କି ?

ଶାଳଗଛ କହିଲା- ମୁଁ ଭାରି ବଳିଷ୍ଠ । ମୋ ଦେହରେ ତ କେତେ କୋରଡ଼ । ସେଇ ଚୁଲୁବୁଲିଆ ଧଣ୍ଡ ସାପଟି ଆଉ କେଉଁଠି ଥୋଇ ଦେଲାକି ? ଆରେ କାଠହଣା ! ତୁ ଦେଖ ତ କାଳେ ପାଇଯିବୁ ।

ଲାଜକୁଳି କହିଲା, "କାକୁଡ଼ି ଲତାଟି ଭାରି ଦୁଷ୍ଟ । ସବୁ ଆଡ଼େ ବୁଲୁଥାଏ । କେଉଁଠିକି ଯଦି ନେଇ ଯାଇଥିବ, ପାଇବା କଷ୍ଟ ହେବ ।"

ବରଗଛ କହିଲା, ମୋ ଉପରେ କେତେ ବଗ ବସନ୍ତି । କିଏ ଆଉ ଉପରେ ନେଇ ରଖି ଦେଇନିତ !

ଗଛ ମାନଙ୍କର କଥା ଶୁଣି ପୁଷ୍ପାର ଚିନ୍ତା ବଢ଼ିଗଲା । ଘରେ ଆସି ଚୁପ୍ ଚାପ୍ ବିଷଣ୍ଣ ମନରେ ବସି ରହିଲା । ସାଙ୍ଗମାନେ ଆଣିଥିବା ଫୁଲମାନଙ୍କୁ ପୁଷ୍ପା ମୁଣ୍ଡରେ ଖୋସିବାକୁ ଗଲାବେଳେ ସ୍ୱର୍ଣ୍ଣଚମ୍ପା ଫୁଲ କହିଲା, "କାନଫୁଲ ପାଖରେ ରହିବାକୁ ମୋତେ ଭାରି ଭଲ ଲାଗେ ।"

ଠିକ୍ ସେତିକି ବେଳକୁ ପୁଷ୍ପା ଭୋ, ଭୋ, କରି କାନ୍ଦି ଉଠିଲା- ଘଟଣାଟି ତା'ର ମନେ ପଡ଼ିଗଲା । କାନଫୁଲଟି ମାଆ ତାକୁ ଦେଇଥିଲେ ।

କାନ୍ଦ ଶୁଣି ସାଙ୍ଗ ମାନେ ଧାଇଁ ଆସିବା ବେଳକୁ ଶର୍ମିଷ୍ଠାର ଚିତ୍କାର ଶୁଣିଲା- ପାଇଗଲି, ପାଇଗଲି, ପାଇଗଲି । ସମସ୍ତେ ତା ଆଡ଼କୁ ଦୌଡ଼ିଲେ ।



## ଅଭ୍ୟାସ

୧. ହଜି ଯାଇଥିବା କାନ ଫୁଲଟି କେଉଁଠି ଅଛି, ବାହାର କର ।

୨. ଗପଟିରେ ର୍ଣ୍ଣ, ଷ୍ଠ, ଷ୍ପ ଥିବା ଅକ୍ଷର ଚାରିପଟେ ଗୋଲ ବୁଲାଅ ।

୩. ପୂର୍ଣ୍ଣ କର ।

କର୍ଣ୍ଣ ଣ

ଓଷ୍ଠ ଷ

ପୁଷ୍ପ ଷ



୪. କିଏ କ'ଣ କହିଲା, ଲେଖ ।

(କ) ଶାଳଗଛ କ'ଣ କହିଲା ?

(ଖ) ସ୍ୱର୍ଣ୍ଣଚମ୍ପା କ'ଣ କହିଲା ?

(ଗ) ବାସନ୍ତୀ କ'ଣ କହିଲା ?

(ଘ) ଶର୍ମିଷ୍ଠା କ'ଣ କହିଲା ?

୫. ମାତ୍ରା ବ୍ୟବହାର କର କୋଠରିର ଯେ କୌଣସି ଅକ୍ଷରକୁ ନେଇ କେତୋଟି ଶବ୍ଦ ଗଠନ କର ।

| ବ | ଓ | ଷ୍ଠ | ପ |
|---|---|---|---|
| ସ | ଷ | ଳ | କ |
| ର୍ଣ୍ଣ | ଷ୍ପ | ତ | ଜ |

୬. ସରଳ କରି ଲେଖ-

ଯେପରି କର୍ଣ୍ଣ-କାନ

ସ୍ୱର୍ଣ୍ଣ-

ପୁଷ୍ପ-

ଓଷ୍ଠ-

 କ'ଣ ଶିଖିବେ

ଭାଷା ◆ ର୍ଣ୍ଣ, ଷ୍ଠ, ଷ୍ପ ର ବ୍ୟବହାର ।

ପରିବେଶ ◆ ସ୍ଥାନୀୟ ବୃକ୍ଷଲତାକୁ ଚିହ୍ନିବେ ଓ ଜାଣିବେ ।

ସୂଚନା ◆ ର୍ଣ୍ଣ, ଷ୍ଠ ଓ ଷ୍ପ ଅକ୍ଷରର ବାରମ୍ବାର ବ୍ୟବହାର ହୋଇଛି ।

ପିଲାଙ୍କ କାର୍ଯ୍ୟ

କହ ଭାଇ କହ, କାହା ହାତରେ କହ

ପିଲାମାନେ ଗୋଲ୍‌ରେ ଠିଆ ହେବେ । ଜଣେ ପିଲା ବାହାରକୁ ଯିବ । ଅନ୍ୟମାନଙ୍କ ମଧ୍ୟରୁ ଜଣେ ମୁଦିଟିଏ ବା ମୁଦ୍ରାଟିଏ ହାତରେ ଧରିବ । ସମସ୍ତେ ସେହି ପରି ଗାଉଥିବେ ଓ ଲୁଚେଇ ମୁଦ୍ରା ବା ମୁଦିକୁ ଅନ୍ୟର ହାତକୁ ଦେଉଥିବେ । ଜଣେ ଦେଲା ଭଳି କଲାବେଳେ ଆଉ ଜଣକ ନେଲା ଭଳି କରୁଥିବ । ହାତ ଥରେ ବାମକୁ ଓ ଥରେ ଡାହାଣକୁ କରୁଥିବେ । ବାହାରେ ଥିବା ପିଲା ଆସି ମୁଦି ବା ମୁଦ୍ରା କାହା ହାତରେ ଅଛି କହିବ । ଯାହାର ହାତରେ ଥିବାର ଧରିବ ସେ ବାହାରକୁ ଯିବ । ଖେଳ ଏହିପରି ଚାଲିବ ।

କବାଡ଼ି

କବାଡ଼ି ଖେଳ ପରି ଦୁଇଦଳରେ ଖେଳ ହେବ । ମାତ୍ର ପିଲାମାନେ ଗଛର ନାମ ରାହା ଧରିବେ ।

ଅଭ୍ୟାସ ◆ ପାଠ ଅନୁଯାୟୀ

ଦଳଗତ କାର୍ଯ୍ୟ . ତାଲିକା କର

| ନାମ | ଡେଙ୍ଗା ଗଛ | ମୋଟା ଗଛ | ଲତା |
|---|---|---|---|
| | ତାଳଗଛ | ବରଗଛ | କାକୁଡ଼ି |

ଅନ୍ୟକାର୍ଯ୍ୟ

କହିଲ ଦେଖି-

◆ ଠେକୁଆଟିଏ ଶ୍ରେଣୀ କୋଠରିକୁ ଆସିଲେ କ'ଣ ହେବ ?

◆ ଗଛ ସବୁ କଥା ହେଲେ କ'ଣ ହେବ ?

◆ ତୁମ ପରିବେଶରେ ଥିବା ଗଛ ଗୁଡ଼ିକ ମଧ୍ୟରୁ କେଉଁ ଗଛ ଗୁଡ଼ିକ ଆମର ଔଷଧୀୟ କାର୍ଯ୍ୟରେ ବ୍ୟବହୃତ ହୁଏ ତାହାର ଏକ ତାଲିକା ପ୍ରସ୍ତୁତ କର ।

ଉପକରଣ ◆ ଚିତ୍ର କାର୍ଡ଼ ଯଥା- ଓଷ୍ଠ, ପୁଷ୍ପ, କାନ, ଶବ୍ଦକାର୍ଡ଼

ସମୟ - ୧୪ ପିରିୟଡ୍

# ମୋ ଗାଁ

ଟିକି ମୁହିଁ ଟିକି ମୋର ଏଇ ନିଜ ଗାଆଁ
ସବୁଠୁ ମଧୁର ଲାଗେ ମତେ ତାର ନାଆଁ ।
ପୁରୁବ ଦିଗେ ବହୁଛି ଟିକି ଏକ ନଈ
କୁଳୁ କୁଳୁ କୁଳୁ ସୁରେ ଗୀତ ଗାଇ ଗାଇ ।
ପଶ୍ଚିମ ଦିଗରେ ଅଛି ଆମ ପାଠ ଶାଳାଟି
ପାଠ ପଢୁ ଟିକି ଟିକି ପିଲା ଆମେ ସେଇଠି ।
ଉତ୍ତର ଦିଗରେ ଅଛି ଟିକି ଏକ ପଡ଼ିଆ
ନିତି ନୂଆ ଖେଳ ଖେଳୁ ଲାଗେ ଭାରି ବଢ଼ିଆ ।
ଦକ୍ଷିଣ ଦିଗରେ ଅଛି ଗୋଟେ ଟିକି ଗାଡ଼ିଆ ।
ଥିର ପାଣି ଲାଗେ ତା'ର ମୋତେ ଭାରି ବଢ଼ିଆ ।



## ଅଭ୍ୟାସ

୧. ତୁମ ଘରର କେଉଁ ପଟେ ସୂର୍ଯ୍ୟ ଉଦୟ ହେଉଛନ୍ତି ଓ ଅସ୍ତ ହେଉଛନ୍ତି, ତାକୁ ତଳେ ଥିବା ସାରଣୀରେ ଲେଖ ।
(ଘରର ସଦସ୍ୟ ମାନଙ୍କୁ ପଚାରି ଲେଖିବେ ।)

| ତାରିଖ | ଘରର କେଉଁପଟେ ସୂର୍ଯ୍ୟ ଉଦୟ ହେଉଛନ୍ତି | ଘରର କେଉଁ ପଟେ ସୂର୍ଯ୍ୟ ଅସ୍ତ ହେଉଛନ୍ତି |
|---|---|---|
| | | |
| | | |
| | | |
| | | |

ଏଥିରୁ ଆମେ କ'ଣ ଜାଣିଲେ ?

୨. ସୂର୍ଯ୍ୟ ଯେଉଁ ଦିଗରେ ଉଦୟ ହୁଅନ୍ତି, ତାହା ପୂର୍ବଦିଗ, ଯେଉଁ ଦିଗରେ ଅସ୍ତ ହୁଅନ୍ତି, ତାହା ପଶ୍ଚିମ ଦିଗ ।
ସୂର୍ଯ୍ୟ ଯେଉଁ ଦିଗରେ ଉଦୟ ହୁଅନ୍ତି, ସେହି ଦିଗକୁ ମୁହଁ କରି ଠିଆ ହୋଇ ତୁମର ବାମ ପଟେ କ'ଣ କ'ଣ ଅଛି ଓ ଡାହାଣ ପଟେ କ'ଣ କ'ଣ ଅଛି ତା'ର ଏକ ତାଲିକା କର ।

୩. ସୂର୍ଯ୍ୟ ଉଦୟ ହେଉଥିବା ଦିଗକୁ ମୁହଁ କରି ଠିଆ ହେଲେ ବାମ ପଟ ଦିଗଟି ଉତ୍ତର ଦିଗ ଓ ଡାହାଣ ପଟଟି ଦକ୍ଷିଣ ଦିଗ ହେବ ।
ତୁମ ଗାଁର ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଦିଗରେ କ'ଣ କ'ଣ ଅଛି ତା'ର ଏକ ତାଲିକା କର ।

| ପୂର୍ବ | ପଶ୍ଚିମ | ଉତ୍ତର | ଦକ୍ଷିଣ |
|---|---|---|---|
| | | | |

୪. ପଢ଼ ଓ ଲେଖ ।

ପଶ୍ଚିମ ________, ________, ________, ________

ନିଶ୍ଚୟ ________, ________, ________, ________

ଆଶ୍ଚର୍ଯ୍ୟ ________, ________, ________, ________

ପଶ୍ଚାତାପ ________, ________, ________, ________

ଶନିଶ୍ଚର ________, ________, ________, ________

୫. 'ଶ୍ଚ' ଯୁକ୍ତାକ୍ଷର ଲଗାଇ ତୁମେ ଆଉ କେତୋଟି ଶବ୍ଦ ଲେଖ ।

________, ________, ________, ________, ________, ________

୬. ଏଇ ଗୀତରୁ ତୁମକୁ ଯେଉଁ ଦୁଇପଦ ଭଲ ଲାଗୁଛି, ତାକୁ ସୁନ୍ଦର ଅକ୍ଷରରେ ଲେଖ ।

________________________________________

________________________________________

________________________________________

________________________________________

________________________________________

୭. ଶବ୍ଦ ଗଢ଼ ।

ଯେପରି ଖେଳ-ଖେଳିବା

ପଢ଼-

ଚାଲ-

ଲେଖ-

ଆସ-

୮. ଆଉ କିପରି ଲେଖାଯାଇପାରେ। ଯେପରି-

ଦର୍ଶନ- ଦରଶନ

ପର୍ବ-

ଗର୍ବ-

ସୂର୍ଯ୍ୟ-

ପର୍ବତ-



୯. ଟିକିଏ ଭାବ ଓ ଲେଖ ।

ଯଦି ସୂର୍ଯ୍ୟ ନଥା'ନ୍ତା, ତା' ହେଲେ କ'ଣ ହୁଅନ୍ତା ?

________________________________________

________________________________________

________________________________________

________________________________________

________________________________________

________________________________________

୧୦. ତୁମ ଶ୍ରେଣୀ କୋଠରିର ନକ୍ସା ଅଙ୍କନ କରି ସେଥିରେ ଥିବା ବିଭିନ୍ନ ଜିନିଷମାନଙ୍କୁ ଚିହ୍ନଟ କର ।

### କ'ଣ ଶିଖିବେ

ଭାଷା ◆ 'ଶ୍ଚ' ଚିହ୍ନିବେ ଓ ଏହାକୁ ବ୍ୟବହାର କରିବେ ।

ପରିବେଶ ◆ ଦିଗ ନିର୍ଣ୍ଣୟ କରିବେ ଓ ନକ୍ସା ଅଙ୍କନ କରିବେ ।

### ସୂଚନା

- ପାଠର ଅଭ୍ୟାସ ପ୍ରଶ୍ନର ୧ନମ୍ବର କାମ ପାଠ ପଢ଼ାଇବାର ପ୍ରାୟ ୫/୬ ଦିନ ପୂର୍ବରୁ କରିବାକୁ ଦେଲେ ପିଲାଙ୍କୁ ଦିଗ ଚିହ୍ନିବା ସୁଯୋଗ ରହିବ ।
- ପିଲାମାନେ ଗୋଲ୍‌ରେ ଠିଆ ହେବେ ।
- ପୂର୍ବ କହିଲେ ସାମନାକୁ ମୁହଁ କରି ଆଗକୁ ଆସିବେ ।
- ପଶ୍ଚିମ କହିଲେ ପଛକୁ ଯିବେ ।
- ଉତ୍ତର କହିଲେ ବାମକୁ ଯିବେ ।
- ଦକ୍ଷିଣ କହିଲେ ଡାହାଣକୁ ଯିବେ ।

### ପିଲାଙ୍କ କାମ

- ପାଠରେ ଦିଆ ହୋଇଥିବା ଗୀତକୁ ଅଙ୍ଗଭଙ୍ଗୀ କରି ପଢ଼ିବେ ।
- ପଶ୍ଚିମ ଶବ୍ଦ କହିବେ ।
- 'ଶ୍ଚ' ଅକ୍ଷର ଚିହ୍ନଟ କରିବେ ।

ଅଭ୍ୟାସ
- ୧ନମ୍ବରର କାମ ୫/୬ ଦିନ ପୂର୍ବରୁ ଘରେ କରିବେ ।
- ୨ ନମ୍ବର କାମ ଶ୍ରେଣୀ ବାହାରକୁ ଯାଇ ଦେଖି ତାଲିକା କରିବେ ।
- ୩ ନମ୍ବର କାମ କରିବାପାଇଁ ଅଧିକ ୨/୩ ଦିନ ସମୟ ନେବେ ।

### ଉପକରଣ

ସ୍ଲେଟ୍, ପେନ୍‌ସିଲ୍, ରବର୍

### ଦଳଗତ କାର୍ଯ୍ୟ

- ଶ୍ରେଣୀ କୋଠରିରେ କରିଥିବା ନକ୍ସାକୁ ଦଳ ମଧ୍ୟରେ ଆଲୋଚନା କରିବେ ଓ ଠିକ୍ ହୋଇଥିବା ନକ୍ସା ପ୍ରଦର୍ଶନ କରିବେ ।
- ଶିକ୍ଷକ କଳାପଟାରେ କୋଠରିର ନକ୍ସା ଅଙ୍କନ କରିବେ ଯେଉଁଥିରେ କୋଠରିରେ ଥିବା ଉପକରଣ ଗୁଡ଼ିକ ସୂଚିତ ହେବ ।
- ନିର୍ଦ୍ଦେଶ- ନକ୍ସା ଅନୁଯାୟୀ ପିଲାମାନେ ବସିବେ ।

  ଚିତ୍ରରେ ଦିଆଯାଇଥିବା ସୂଚନା ଅନୁଯାୟୀ ତୁମେ ଯାଅ ।

  କ୍ରମାନ୍ୱୟରେ ଶିକ୍ଷକ ସୂଚନା ଦେବେ ଓ ପିଲାମାନେ ସେଇ ରାସ୍ତା ଦେଇ ଯିବେ ।

ପାଠ-୨୦

# ଆସ ଜାଣିବା ଋତୁମାନଙ୍କୁ

ସମୟ - ୯ ପିରିୟଡ୍





କହ ଓ ଲେଖ । ଆମ୍ବଗଛ

_______ _______
_______ _______
_______

କହ ଓ ଲେଖ । କାକୁଡ଼ି

_______ _______
_______ _______





କହ ଓ ଲେଖ । ମନ୍ଦାର ଫୁଲ

_______ _______
_______ _______

କହ ଓ ଲେଖ । ଆମ୍ବ

_______ _______
_______ _______
_______



_______ _______
_______ _______

## ଅଭ୍ୟାସ

୧. କେଉଁ ଋତୁରେ କ'ଣ ହୁଏ ଲେଖ ।

| ପନିପରିବା ଶସ୍ୟର ନାମ | ଗ୍ରୀଷ୍ମଋତୁ | ବର୍ଷାଋତୁ | ଶୀତଋତୁ | ବର୍ଷସାରା |
|---|---|---|---|---|
| ଫୁଲକୋବି | | | | |
| ବାଇଗଣ | | | | |
| ଧାନ | | | | |
| କାକୁଡ଼ି | | | | |
| ଆମ୍ବ | | | | |
| ଟମାଟୋ | | | | |
| ବିରି | | | | |

୨. ଛବି ଦେଖି କେଉଁଟି ଖରାଦିନ, ବର୍ଷାଦିନ ଓ ଶୀତଦିନରେ ବ୍ୟବହାର କରୁ ଗାର ଦିଅ ।



ଖରାଦିନ | ବର୍ଷାଦିନ | ଶୀତଦିନ

୩. ତୁମକୁ ଗ୍ରୀଷ୍ମଋତୁ, ବର୍ଷାଋତୁ ଓ ଶୀତଋତୁ ମଧ୍ୟରୁ କେଉଁ ଋତୁ ଭଲ ଲାଗେ ଓ କାହିଁକି- ଲେଖ ।

_______________________
_______________________
_______________________
_______________________
_______________________
_______________________

୪. ଚିତ୍ର ଦେଖ ଓ କିଛି ଭାବି ୫ଟି ବାକ୍ୟ ଲେଖ ।



_______________________________________________

_______________________________________________

_______________________________________________

_______________________________________________

_______________________________________________

୫. ଛତାର ଚିତ୍ର ଅଙ୍କନ କରି ରଙ୍ଗ ଦିଅ ।

**କ'ଣ ଶିଖିବେ**

ଭାଷା ◆ ଚିତ୍ର ଅଧ୍ୟୟନ କରିବେ ।

ପରିବେଶ ◆ ଋତୁମାନଙ୍କର ଧାରଣା ପାଇବେ ।

**ସୂଚନା**

କହ ଓ ଲେଖ- ପିଲାମାନେ ଚିତ୍ର ଦେଖି ନାମ ଗୁଡ଼ିକ କହିବେ ଓ ଗଛ ଗୁଡ଼ିକର ନାମ ତଳକୁ ତଳ ବହିରେ ଲେଖିବେ ।

**ପ୍ରସ୍ତୁତି**

ଋତୁ ଖେଳ

> ପିଲାମାନେ ଗୋଲରେ ବୁଲିବେ । ଗ୍ରୀଷ୍ମ, ବର୍ଷା,ଶୀତ, ତିନୋଟି ଋତୁର ନାମ କ୍ରମାନ୍ୱୟରେ କହିବେ । କହିବା ସମୟରେ ହଠାତ୍ ଗୋଟିଏ ଋତୁର ନାମ କହିଲେ ପିଲାମାନେ ସେଇ ଋତୁର ଯେ କୌଣସି ଗୋଟିଏ ସୂଚନା ଅଭିନୟ ମାଧ୍ୟମରେ କରିବେ । ଯଥା- ଗ୍ରୀଷ୍ମ କହିଲେ ଗ୍ରୀଷ୍ମ ଋତୁର ଅଭିନୟ କରିବେ । ଏ ସମୟରେ ବର୍ଷା ଓ ଶୀତ ଋତୁର ଅଭିନୟ କଲେ ସେ ଖେଳକୁ ଆଗେଇ ନେବେ ।

ଖରାଦିନ

> ପ୍ରତ୍ୟେକ ଖରାଦିନ ବିଷୟରେ ଗୋଟିଏ ବାକ୍ୟ କହିବେ । ଏହିପରି ବର୍ଷାଦିନ, ଶୀତଦିନ ବ୍ୟବହାର କରାଯାଇପାରିବ ।

ମଞ୍ଜିଖେଳ

> ପିଲାମାନେ ଦଳରେ ବସିବେ । ମଞ୍ଜିକୁ ◯ ଗୋଲ୍ ରେ ପକାଇବେ । ମଞ୍ଜି ଗୁଡ଼ିକୁ ଗାର ବାହାରକୁ ଆଣିବେ । ଆଣିବା ସମୟରେ ଅନ୍ୟ ମଞ୍ଜି ହଲିଗଲେ ତାଙ୍କ ପାଳି ଯିବ ।

> ଉପକରଣ- ତେନ୍ତୁଳି ମଞ୍ଜି, ଫୁଲ, ପତ୍ରର ଆଲବମ୍, ପନି ପରିବାର ଚିତ୍ର କାର୍ଡ଼ ।

**ଆମେ ଜାଣିବା**

ବର୍ଷାଦିନ, ଖରାଦିନ ଓ ଶୀତଦିନରେ ମିଳୁଥିବା ଖାଦ୍ୟକୁ ଆମେ ସଂରକ୍ଷଣ କରି ରଖି ପାରିବା ଯଥା- ଶୀତଦିନେ ମିଳୁଥିବା ଫଳରୁ ଆମେ ସ୍କ୍ୱାସ୍ କରି ଖରାଦିନେ ବ୍ୟବହାର କରିପାରିବା ।

**ଦଳଗତ କାର୍ଯ୍ୟ**

◆ ଗ୍ରୀଷ୍ମ ଋତୁ, ଶୀତ ଋତୁ, ବର୍ଷା ଋତୁରେ ହେଉଥିବା ପନିପରିବାର ନାମ କହିବେ ।

◆ ବିଭିନ୍ନ ପନିପରିବାର ଚିତ୍ର ଥିବ । ତାକୁ ରଙ୍ଗ କରିବେ । କେଉଁ ଋତୁ କେମିତି ଗାର ପକାଇ ନେବେ ।

> ଗାଜର, କୋବି, ମଟର, କଦଳୀ, ଆମ୍ବୁ, ମଲ୍ଲୀ, ସେଓ, କମଳା,ତରଭୂଜ



ଗ୍ରୀଷ୍ମ ବର୍ଷା ଶୀତ

**ପ୍ରକଳ୍ପ**

◆ ବିଭିନ୍ନ ଫୁଲ ସଂଗ୍ରହ କରି ତାହାକୁ ପର୍ଯ୍ୟବେକ୍ଷଣ କର ଓ କେଉଁ ଋତୁରେ କେଉଁ ଫୁଲ ଓ ପନିପରିବା ହୁଏ ତାହାର ଏକ ତାଲିକା କର ।

| ଖରାଦିନିଆ | ବର୍ଷାଦିନିଆ | ଶୀତ ଦିନିଆ |
|---|---|---|
| | | |
| | | |
| | | |
| | | |

ପାଠ-୨୧

# ବେଙ୍ଗ ହେଲା ରାଜା

ସମୟ - ୯ ପିରିୟଡ୍

ପୋଖରୀ ରାଇଜର ରାଜା କୁମ୍ଭୀର । ସେ ବୃଦ୍ଧ ହୋଇ ଯାଇଥାଏ । ଦିନେ ସେ ଭାବିଲା- ତା' ରାଇଜର ସବୁଠୁ କିଏ ବୁଦ୍ଧିଆ ପରୀକ୍ଷା କରିବ । ତାକୁ ନୂଆକରି ରାଜା କରାଇବ । ଏଣୁ ବେଙ୍ଗ, ମାଛ, କଙ୍କଡ଼ା ସମସ୍ତଙ୍କୁ ଡକା ଗଲା । କୁମ୍ଭୀର ଜାଣିଛି ମାଙ୍କଡ଼ ବଡ଼ ବୁଦ୍ଧିଆ । ତେଣୁ ମାଙ୍କଡ଼କୁ ଡକାଗଲା ବିଚାରପତି ହେବା ପାଇଁ ।



ପରୀକ୍ଷା ଆରମ୍ଭ ହେଲା । କୁମ୍ଭୀର ଅଧାପାଣି ଥିବା କାଚ ଗିଲାସ ଆଣି ଥୋଇ ଦେଲା । କହିଲା- ଏ ଗିଲାସ ଭିତରେ କ'ଣ ଅଛି ? ମାଛ କହିଲା ପାଣି ଅଛି । ହେଲେ ବୁଦ୍ଧିଆ ବେଙ୍ଗ କହିଲା, ଏ ଗିଲାସରେ ଅଧା ପାଣି ଓ ଅଧା ପବନ ଅଛି । ମାଙ୍କଡ଼ କହିଲା, ସାବାସ୍ ବେଙ୍ଗ । ଏଥର ଆଉ ଏକ ପରୀକ୍ଷା କରିବି ।

ଗୋଟିଏ ଗଛରେ ପାଞ୍ଚଟି ପକ୍ଷୀ । ବଗ ଚୁପ୍ କରି ଗଛ ମୂଳରେ ଏକ ବାଣ ଫୁଟେଇ ଦେଲା । ବାଣ ଶବ୍ଦରେ ଦୁଇଟି ପକ୍ଷୀ ଅଚେତ ହୋଇଗଲେ । ଗଛରେ ଆଉ କେତୋଟି ପକ୍ଷୀ ରହିଲେ । କଙ୍କଡ଼ା ଦୁଇ ଗୋଡ଼ ଟେକି କହିଲା, ଗଛରେ ଆଉ ତିନୋଟି ପକ୍ଷୀ ରହିଲେ । ବେଙ୍ଗ ଆଖି ମିଟିକା ମାରି କହିଲା, ନା'ନା - ବାକି ତିନୋଟି ପକ୍ଷୀ ଗଛରୁ ଫଡ୍ ଫଡ୍ ହୋଇ ଉଡ଼ିଗଲେ । କୁମ୍ଭୀର କହିଲା- ପ୍ରକୃତରେ ବେଙ୍ଗଟି ବଡ଼ ବୁଦ୍ଧିଆ । ତେଣୁ ସେ ପୁରସ୍କାର ପାଇବା ପାଇଁ ଯୋଗ୍ୟ । ବୃଦ୍ଧ କୁମ୍ଭୀର ବେଙ୍ଗକୁ ପିଠିରେ ବସାଇ ଚତୁର୍ଦ୍ଦିଗ ବୁଲାଇ ଆଣି କହିଲା- ମୁଁ ଆଉ ରାଜା ହେବି ନାହିଁ । ସେହି ଦିନଠୁ ବେଙ୍ଗ ପୋଖରୀ ରାଇଜର ରାଜା ହୋଇ ରହିଲା ।



## ଅଭ୍ୟାସ

୧. ଗଦ୍ୟାଂଶରେ 'ଦ୍ଧ'ଓ 'ଦ୍ଦ' ଥିବା ଶବ୍ଦ ତଳେ ଗାର ଦିଅ ।

ବୃଦ୍ଧ ଉମାଶଙ୍କରଙ୍କର ପୁଅ ବୁଦ୍ଧଦେବ । ତାକୁ ଥରେ ସର୍ଦ୍ଦି ହୋଇ ଜ୍ୱର ହେଲା । ବୃଦ୍ଧ ତାଙ୍କ ସର୍ଦ୍ଦାରକୁ ପଠେଇ ଡାକ୍ତରଙ୍କୁ ଡକେଇ ପଠାଇଲେ । ଡାକ୍ତର ଆସି ଔଷଧ ଦେଲେ । ଜ୍ୱର କମିଗଲା ।

୨. ଗୋଲ୍ ମଧ୍ୟରେ ଥିବା ଅକ୍ଷରଗୁଡ଼ିକୁ ନେଇ ଶୂନ୍ୟସ୍ଥାନ ପୂରଣ କର ।

ବୁ____ଦେବ

ବୁ____ଆ

ବୃ____

ବିଶୁ____

ଚତୁ____ଗ




୩. ଗାର ଟାଣି ଚିତ୍ର ସହ ଶବ୍ଦକୁ ମିଳାଅ ।

| ଶବ୍ଦ |
|---|
| ବୃଦ୍ଧ |
| ସର୍ଦ୍ଦାର |
| ବୁଦ୍ଧଦେବ |
| ନର୍ଦ୍ଦମା |

୪. ଗାର ଟାଣି ଜଳଚର ଓ ଉଭୟଚର ଦର୍ଶାଅ ।

ବେଙ୍ଗ, ମାଛ, କୁମ୍ଭୀର, କଇଁଛ, କଙ୍କଡ଼ା ।



ক'ଣ ଶିଖିବେ

ଭାଷା ◆ ଢ, ଢ଼, ଢ଼ ଚିହ୍ନଟ କରିବେ ଓ ପଢ଼ିବେ ।

ପରିବେଶ ◆ ଜଳଚର ପ୍ରାଣୀ ବିଷୟରେ ଜାଣିବେ ।

ସୂଚନା

◆ ଗପ, ଗପରୁ ଶବ୍ଦ, ଶବ୍ଦରୁ ଅକ୍ଷର ଚିହ୍ନିବେ ।

ପିଲାଙ୍କ ପାଇଁ କାମ

ଧ୍ୟାନ

ପିଲାମାନେ ଆଖି ବନ୍ଦ କରି ବସିବେ ।
ଶିକ୍ଷକ କିଛି ଶବ୍ଦ କରିବେ ଯଥା- ଚୁଟ୍‌କି, ଠକ୍‌ଠକ୍
ପିଲାମାନ କାହାର ଶବ୍ଦ ପୂର୍ଣ୍ଣ ବାକ୍ୟରେ କହିବେ ।

ନାମ କହ

ଦଳରେ ଚିତ୍ର ଦିଆଯିବ
ଗାନ୍ଧୀ, ନେହେରୁ, ଶାସ୍ତ୍ରୀ, ସର୍ଦ୍ଦାର ପଟେଲ, ଇତ୍ୟାଦି
ପିଲାମାନେ ଚିତ୍ରରୁ ବ୍ୟକ୍ତି ର ନାମ କହିବେ ।

କିଏ ଚତୁର

◆ ବୁଦ୍ଧିଆ/ ନିର୍ବୁଦ୍ଧିଆ-ପିଲାମାନେ ଗୋଲରେ ଠିଆ ହୋଇ ଚାଲୁଥିବେ ।
◆ ଶିକ୍ଷକ ବୁଦ୍ଧିଆ/ ନିର୍ବୁଦ୍ଧିଆ କହିବେ ।
◆ ଶୀଘ୍ର ଶୀଘ୍ର କରିବାକୁ ଚେଷ୍ଟା କରିବେ ।
◆ ବୁଦ୍ଧିଆ କହିଲେ ଚାଲିବେ, ନିର୍ବୁଦ୍ଧିଆ କହିଲେ ବସିଯିବେ ।

ଅଭ୍ୟାସ ◆ ପାଠ ଅନୁଯାୟୀ

ଦଳଗତ କାର୍ଯ୍ୟ

ପିଲାମାନେ ଦଳରେ ବସିବେ । ଗୋଟିଏ ପିଲାର ପଛପଟେ ଜଳଚର ଜୀବର ଚିତ୍ରଟିଏ ଲଗାଇ ଦିଆଯିବ । ଦଳର ଅନ୍ୟମାନେ କେଉଁ ଜୀବର ଛବି ଲଗାଯାଇଛି ପ୍ରଶ୍ନ ମାଧ୍ୟମରେ କହିବେ । ୫ଟି ପ୍ରଶ୍ନର ଉତ୍ତର ମଧ୍ୟରେ ଜୀବର ନାମ କହି ପାରିଲେ ବିଜୟୀ ହେବେ । ପ୍ରଶ୍ନ ଗୁଡ଼ିକର ଉତ୍ତର ହଁ/ନାହିଁ ରେ ହେଉଥିବ ।

ପ୍ରକଳ୍ପ

ମଝି ଅକ୍ଷର ନେଇ ଶବ୍ଦ ଗଢ଼




ଉପକରଣ- ଫ୍ଲାସକାର୍ଡ଼, ଚିତ୍ରକାର୍ଡ଼

## ପଞ୍ଚମ ଏକକ ପରୀକ୍ଷଣ

ପାଠ-୨୨

# ଆସ ସଜାଡ଼ିବା ପଢ଼ା ଘରକୁ

ସମୟ - ୮ ପିରିୟଡ୍

କୃଷ୍ଣଚନ୍ଦ୍ର ବିଷ୍ଣୁପ୍ରସାଦ ଘରକୁ ବୁଲିବାକୁ ଯାଇଥିଲା । ବିଷ୍ଣୁପ୍ରସାଦ କୃଷ୍ଣଚନ୍ଦ୍ରକୁ ନେଇ ପଢ଼ା ଘରେ ବସାଇଲା । କୃଷ୍ଣଚନ୍ଦ୍ର ବିଷ୍ଣୁର ପଢ଼ା କୋଠରି ଦେଖି ଖୁସି ହୋଇ ଗଲା ଓ ନିଜ କୋଠରି କଥା ମନେ ପକାଇଲା । ଚାଲ ଦେଖିବା ଦୁଇ ଜଣଙ୍କ ପଢ଼ା ଘରର ଦୃଶ୍ୟ ।



## ଅଭ୍ୟାସ

୧. ପାଠରେ ଥିବା ଦୁଇ ପଢ଼ିବା ଘର ମଧ୍ୟରେ କ'ଣ ପାର୍ଥକ୍ୟ ଦେଖୁଛ ବାହାର କର ଓ ଲେଖ ।

______________________

______________________

______________________

______________________

୨. କୃଷ୍ଣଚନ୍ଦ୍ରର ପଢ଼ିବା ଘରକୁ ସଫାସୁତୁରା କରିବା ପାଇଁ କି ଉପକରଣ ଦରକାର ହେବ ଲେଖ ଓ ଚିତ୍ର କର । ଯେପରିକି-

ଝାଡୁ



________

________

________

________

________

୩. ଚିତ୍ରରେ କ'ଣ ଦେଖୁଛ ଲେଖ ।



______________________

______________________

______________________

୪. ପରିବେଶକୁ ସଫା ରଖିବା ପାଇଁ ଯେଉଁ ଜିନିଷଗୁଡ଼ିକ ଦରକାର, ତା' ପାଖରେ (✓) ଚିହ୍ନ ଦିଅ ।




୫. ଶବ୍ଦ ପଢ଼, ଗାର ଟାଣ (ଗପରୁ) ଲେଖ

| | |
|---|---|
| କୃଷ୍ଣ | କୃଷ୍ଣ- |
| ବିଷ୍ଣୁ | ବିଷ୍ଣୁ- |
| ଉଷ୍ଣ | ଉଷ୍ଣ- |

୬. ଶୂନ୍ୟ ସ୍ଥାନ ପୂରଣ କର । (ଅନୁଚ୍ଛେଦ ପଢ଼ି)

________ ଙ୍କ ଘରକୁ ________ ବୁଲି ଯାଇଥିଲେ ।

________ ଙ୍କ ପଢ଼ିବା ଘର ଅପରିଷ୍କାର ଥିଲା ।

________ ତାଙ୍କ ନିଜ ପଢ଼ା ଘରକୁ ପରିଷ୍କାର କଲେ ।

### କ'ଣ ଶିଖିବେ

ଭାଷା ◆ 'ଷ୍ଣ' ଯୁକ୍ତାକ୍ଷରକୁ ଚିହ୍ନିବେ, ପଢ଼ିବେ ଓ ଲେଖିବେ ।

ପରିବେଶ ◆ ନିଜ ଘର ଓ ପରିବେଶକୁ ସଫା ସୁତୁରା ରଖିବେ ।

### ସୂଚନା

◆ ଅସଜଡ଼ା ଓ ସଜଡ଼ା ପଢ଼ା ଘରର ଦୃଶ୍ୟ ଦିଆଯାଇଛି (ଚିତ୍ର ମାଧ୍ୟମରେ)

◆ 'ଷ୍ଣ' ଯୁକ୍ତାକ୍ଷରକୁ ବାରମ୍ବାର ବ୍ୟବହାର କରାଯାଇଛି ।

### ପ୍ରସ୍ତୁତି

ଚୋର ପୋଲିସ୍

ପିଲାମାନେ ଦଳରେ ବସିବେ । ଜଣେ ଚୋର ହେବ । ଚୋର ଯାହା କହିବ ଅନ୍ୟମାନେ ତାହା କରିବେ । ଜଣେ ପୋଲିସ୍ ହେବ । ପୋଲିସ୍ ଚୋରକୁ ଖୋଜି ବାହାର କରିବ । ଚୋରକୁ ପାଇଗଲେ ଚୋର, ପୋଲିସ୍ ହେବ ।

### ରୁମାଲ୍ ଖେଳ

ପିଲାମାନେ ଗୋଲ କରି ବସିବେ । ଜଣେ ଚୋର ହେବ । ସେ ଗୋଲ୍ ଚାରିପଟେ ବୁଲିବ । ଚୁପ୍ କରି ସେ ଜଣକ ପଛରେ ରୁମାଲ୍ ପକେଇ ବୁଲିବ । ଯାହା ପଛପଟେ ରୁମାଲ୍ ପଡ଼ିଥିବ ସେ ଜାଣିଗଲା ପରେ ରୁମାଲ ଧରି ବୁଲୁଥିବା ପିଲାକୁ ଗୋଡ଼ାଇବ । ପୂର୍ବରୁ ରୁମାଲ୍ ଧରି ବୁଲୁଥିବା ପିଲା ଖାଲି ସ୍ଥାନରେ ବସିଯିବ । ନହେଲେ ସେ ଖାଲି ରୁମାଲ୍‌ରେ ବାଡ଼େଇବ । ଖେଳଟି ଏଇ ଭଳି ଚାଲିବ ।

### ଆମେ ଜାଣିବା

◆ ଛେପ, ଖଙ୍କାର ଏଣେତେଣେ ପକାଇବା ନାହିଁ ।

◆ ମଇଳାକୁ ଗାତରେ ପକାଇବା ।

### ଦଳଗତ କାର୍ଯ୍ୟ

◆ ପିଲାମାନେ ଦଳଗତ ଭାବେ ଯାଇ ପାଖରେ ଥିବା ନଳକୂପର ଚାରିପାଖ ସଫା କରିବେ ।

### ପ୍ରକଳ୍ପ

◆ ତୁମ ବିଦ୍ୟାଳୟ ସଫେଇ କାମର (୭ଦିନର) ଏକ ତାଲିକା କର ।

| ବାରର ନାମ | ପିଲାରନାମ | ସଫେଇ କାମ |
|---|---|---|
| ସୋମବାର | | |
| ମଙ୍ଗଳବାର | | |
| ବୁଧବାର | | |
| ଗୁରୁବାର | | |
| ଶୁକ୍ରବାର | | |
| ଶନିବାର | | |

**ଶିକ୍ଷକଙ୍କ କାମ**

**ସୂଚନା**

- ଚିତ୍ର ଦେଖି ପାଠକୁ ଆଙ୍ଗୁଠି ଦେଇ ପଠନ କରିବେ ।
- ଆଲୋଚନା ସମୟରେ କିଛି ପ୍ରଶ୍ନ ପଚାରିବେ ।
  ଯଥା- ଆମେ ଘରକୁ କେଉଁଥିରେ ସଫା କରୁ ?
  କିପରି ସଫା ରଖୁ ? ଇତ୍ୟାଦି
- କୃଷ୍ଣଚନ୍ଦ୍ର ଓ ବିଷ୍ଣୁପ୍ରସାଦ ଉଭୟ ଶବ୍ଦରେ ଥିବା ସାଧାରଣ ଅକ୍ଷରରେ ଗୋଲ୍ ବୁଲାଇବାକୁ କହିବେ ।

**ପିଲାଙ୍କ କାମ**

- ଉଭୟ ଚିତ୍ରକୁ ଦେଖି ତୁଳନା କରି ପ୍ରତ୍ୟେକ ଗୋଟିଏ ଲେଖାଏଁ ବାକ୍ୟ କହିବେ ।
- ପାଠରେ ଥିବା ଲେଖାକୁ ପଢ଼ିବେ ।
- 'ଷ୍ଣ' ଯୁକ୍ତାକ୍ଷରରେ ଗୋଲ ବୁଲାଇବେ ।
- ନିଜ ବିଦ୍ୟାଳୟଗୃହକୁ ସଫା କରିବେ ।

**ଅଭ୍ୟାସ** ପାଠ ଅନୁଯାୟୀ

**ଉପକରଣ** ରୁମାଲ୍

| ପାଠ-୨୩ |
|---|

ସମୟ - ୮ ପିରିୟଡ୍

# ଫେରିବାଲା

ଖେଳଣା କିଣ, ଖେଳଣା
କିଏ କିଣିବ ଖେଳଣା,
ଆସରେ କିଣ ଖେଳଣା
ସମ୍ବଲପୁରର ଫେରିବାଲା ମୁହିଁ
ପୁଷ୍କର ମୋହର ନାମ
ଧାଡ଼ି ଧାଡ଼ିକରି ସଜାଇଛି ଭାଇ
ଆସ କିଣ ଛାଡ଼ି କାମ ।
କୁକୁର,ମାଙ୍କଡ଼ ବାଘ,ଭାଲୁ, ସିଂହ
ହାତୀ, ହରିଣ, ଠେକୁଆ
ଶୁଆ,ଶାରୀ,ବଗ ବତକ, କୁକୁଡ଼ା
ପାରା, କୋଇଲି, ଚଟିଆ ।
ବଇଁଶୀ, ମହୁରୀ ବୀଣା, ଢୋଲ, ପିପି
ତୁରୀ, ମୃଦଙ୍ଗ,ମାଦଳ
ବସ୍, ଜିପ୍, କାର୍ ଟ୍ରକ୍, ସାଇକେଲ
ଜାହାଜ, ରକେଟ୍, ରେଳ ।
ପଙ୍ଖା, ଶଙ୍ଖା,ଶଙ୍ଖ ଅତର,ଅଳତା
କଜଳ, ଫିତା, ଟିକିଲି
ଡାଳିମ୍ବ, ଅଙ୍ଗୁର, ଆମ୍ବ, ଜାମୁ, ସେଓ
ପଣସ, ଲିଚୁ, କଦଳୀ
ମାଉସୀ ରଖିବ ଭଉଣୀ କିଣିବ
ଫେରିବାଲା ମୁଁ ଆସିଛି
ଆସ ହେ ମାଉସୀ ଆସହେ ଭଉଣୀ
ବେଳ ତ ଗଡ଼ି ଯାଉଛି ।



## ଅଭ୍ୟାସ

୧. ଫେରିବାଲା ଠାରୁ ତୁମେ କ'ଣ କିଣିବ, ତା'ର ଏକ ତାଲିକା କର ।

______ ______ ______ ______
______ ______ ______ ______
______ ______ ______ ______

୨.

| ଆମେ କ'ଣ କଞ୍ଚାଖାଉ | ଆମେ କ'ଣ ପାଚିଲା ଖାଉ |
|---|---|
| ପିଆଜ | ସପୁରୀ |
| | |
| | |
| | |
| | |
| | |

୩. ତୁମେ ଭାତ ସାଙ୍ଗରେ କ'ଣ କ'ଣ ଖାଅ, ଲେଖ ।

| |
|---|

୪. ଗାର ଟାଣ

(ଖଟା)

(ମିଠା)

(କଷା)

(ପିତା)



୫. କିପରି ଯିବ ?

ପାଖ ଘରକୁ

ଦୋକାନକୁ

ଦିଲ୍ଲୀକୁ

ଚନ୍ଦ୍ରକୁ

ପାଣିରେ




୬. ଶମ୍ଭୁ ତା'ର ଝିଅର ବାହାଘର ପାଇଁ କେଉଁ ଜିନିଷ କେଉଁଠାରୁ ଆଣିବ ?



| ଗାଁରୁ ଆଣିବ | ସହରରୁ ଆଣିବ |
|---|---|
| | |
| | |
| | |
| | |
| | |
| | |

କ'ଣ ଶିଖିବେ

ଭାଷା
- ଭାବ ଲେଖିପାରିବେ ।

ପରିବେଶ
- ହାଟ, ବଜାରର ଧାରଣା ପାଇବେ ।

ସୂଚନା

- ସ୍ୱର, ଅଭିନୟ ଅନୁକରଣ କରିବେ- କିଏ କିପରି କରନ୍ତି ।
  ପରିବା ବିକାଳି
  ମାଛ ବିକାଳି
  ଶାଗ ବିକାଳି
  ଫଳ ବିକାଳି
- ବଜାରରେ କି କି ଖେଳଣା ମିଳେ କହିବେ ।

ପିଲାଙ୍କ କାମ

ଆବୃତ୍ତି କରିବେ । ପାଠରେ ଦିଆଯାଇଥିବା ଗୀତକୁ ଅଭିନୟ କରି ଗାଇବେ ।

ଅଭ୍ୟାସ

- ପାଠ ଅନୁସାରେ କହିବେ ଓ ବହିରେ ଲେଖିବେ ।

ଦଳଗତ କାର୍ଯ୍ୟ

ଦେଖିଥିବା ଦୋକାନରେ କ'ଣ କ'ଣ ଜିନିଷ ମିଳେ ଲେଖିବେ ।
ଦିଆଯାଇଥିବା ଗୀତର ଜୀବଜନ୍ତୁ, ଫଳ, ଯାନବାହନକୁ ଅଲଗା କରିବେ ।

| ଜୀବଜନ୍ତୁ | ଫଳ | ଯାନବାହନ | ଅନ୍ୟାନ୍ୟ |
|---|---|---|---|
| | | | |
| | | | |

- ଫେରିବାଲା ଘର ଘର ବୁଲି ବିକିବା ଦ୍ୱାରା କ'ଣ ସୁବିଧା ହୁଏ କହିବେ ।

ପ୍ରକଳ୍ପ କାର୍ଯ୍ୟ

- ଘର ପାଖ ହାଟକୁ ଯାଇ ସେଠାରେ କ'ଣ କ'ଣ ହୁଏ, ତା'ର ତାଲିକା କରିବେ । ଦିଆସିଲି ଡବା ସାହାଯ୍ୟରେ ଖେଳନା ତିଆରି କରିବେ ।

পাঠ-୨୪

# ଉପର ବାଲା ତଳ ବାଲା

ସମୟ - ୯ ପିରିୟଡ୍



ଉତ୍କଳର ଏକ ଛୋଟ ଗାଁ, ଶାନ୍ତପୁର । ଚୋର ମାନେ ସେଇଠି ଉତ୍ପାତ କରୁଥିଲେ । ସେଠାରେ ବୁଢ଼ୀଟିଏ ରହୁଥିଲା । ସେ ଚମତ୍କାର କ୍ଷୀରୀ ତିଆରି କରେ । କୁଣିଆ ଆସିଲେ କ୍ଷୀରୀ ଦେଇ ସତ୍କାର କରେ । କିନ୍ତୁ ସେଦିନ ତା'ର ନାତି, ନାତୁଣୀ ଆସିବାର ଥାଏ ।

ପିଲାଙ୍କ ପାଇଁ ବୁଢ଼ୀ ଭଲ କରି କ୍ଷୀରୀ ତିଆରି କଲା । ଗରମ ଗରମ କ୍ଷୀରୀ । ଭାବିଲା, କ୍ଷୀରୀ ଥଣ୍ଡା ହେବାଯାଏ ଟିକିଏ ବିଶ୍ରାମ କରେ । କିନ୍ତୁ ତା'ର ଆଖି ଲାଗିଗଲା ଓ ଶୋଇ ପଡ଼ିଲା ।





ସେତେବେଳେ ପଶି ଆସିଲେ ଦୁଇଟି ଚୋର । ଗରମ ଗରମ ମିଠା ମିଠା କ୍ଷୀରୀ ଉତ୍ସାହରେ ଖାଉଥାନ୍ତି । ବୁଢ଼ୀ କଡ଼ ଲେଉଟାଇଲା । ଉଁ..ଉଁ..ଉଁ । ଚୋରଙ୍କୁ ଜଣାଗଲା ବୁଢ଼ୀଟି ଉଠି ପଡ଼ିଲା ।



ଖଡ଼ ଖଡ଼ ଶବ୍ଦ ଶୁଣି ସେ ଚିତ୍କାର କଲା । ଝଟ ପଟ ଜଣେ ଉପରେ ଓ ଅନ୍ୟ ଜଣେ ଖଟ ତଳେ ଲୁଚିଗଲେ ।

ପଡ଼ୋଶୀ ମାନେ ଶବ୍ଦ ଶୁଣି ଦୌଡ଼ି ଆସିଲେ । ସେମାନେ ପଚାରିଲେ ବୁଢ଼ୀ ମା' କ'ଣ ହେଲା ? ବୁଢ଼ୀ ଉଠି କହିଲା- ''କେ ଜାଣେ ଉପରବାଲା ଜାଣନ୍ତି ।'' ଏକଥା ଶୁଣି ଉପର ବାଲା ଚୋର କହିଲା-''ଉପର ବାଲା ଖାଲି କାହିଁକି, ଖଟ ତଳବାଲା ବି ତ ଅଛି ।''

ଦୁଇ ଚୋର ଧରା ପଡ଼ିଲେ ।

# ଅଭ୍ୟାସ

୧. କହ ଓ ଲେଖ:
ତୁମ ପରିବାରରେ କିଏ କିଏ ରହନ୍ତି ?

______________________________

______________________________

୨. ପଢ଼ ଓ କାହାଣୀକୁ ଆଗକୁ ବଢ଼ାଅ ।
ନାତି ଓ ନାତୁଣୀ ବୁଢ଼ୀ ମା' କୁ କ୍ଷୀରୀ ______________

______________________________

______________________________

______________________________

୩. ଉତ୍ତର କହ ।

(କ) ବୁଢ଼ୀ ପାଖକୁ କିଏ କିଏ ଆସିଲେ ?

(ଖ) ବୁଢ଼ୀର କ୍ଷୀରୀ କେମିତି ଲାଗେ ?

(ଗ) କୁଣିଆ ଆସିଲେ ବୁଢ଼ୀ କ'ଣ କରେ ?

(ଘ) ଦୁଇ ଚୋର କେଉଁଠି ଲୁଚିଗଲେ ?

(ଙ) ବୁଢ଼ୀ ତା' ନାତି,ନାତୁଣୀଙ୍କ ପାଇଁ କ'ଣ ତିଆରି କରିଥିଲା ?

୪.(କ) ଗପରୁ ଖୋଜ ଯେଉଁଠି କ୍ର ଯୋଗରେ ଶବ୍ଦ ଲେଖା ଅଛି ତା' ତଳେ ଗାର ଦିଅ ।

(ଖ) ପଢ଼ ଓ ଲେଖ ।

| | | | | | | | |
|---|---|---|---|---|---|---|---|
| ଉତ୍କଳ | _____ | ସତ୍କାର | _____ | ଚମତ୍କାର | _____ | ଚିତ୍କାର | _____ |
| ଉତ୍ପଳ | _____ | ଉତ୍ପାଦନ | _____ | ଉତ୍ପନ୍ନ | _____ | ମହାତ୍ମା | _____ |
| ଶବ୍ଦ | _____ | ଅବ୍ଦ | _____ | ଖ୍ରୀଷ୍ଟାବ୍ଦ | _____ | | |

୫. କ୍ର, ଲଗାଅ ଓ ଶବ୍ଦ ଗଢ଼ (ଆବଶ୍ୟକ ସ୍ଥଳେ ମାତ୍ରା ଦେଇ ପାରିବ) ।

| | | | |
|---|---|---|---|
| ଉ____ଳ | ମହାମା | ଯନ | ରନ |
| ସ____ର | ଉପଳ | ଆମୀୟ | ପନୀ |
| ଚମ____ର | ଉପାଦନ | ଉପନ | ଉପାତ |

୬. 'ହ୍ନ' ବ୍ୟବହାର କରି କିଛି ଶବ୍ଦ ତୁମେ ବି ଲେଖ ।

---

---

---

୭. ଚୋର ଭୟରେ ବୁଢ଼ୀ ତା'ର ସୁନାଗହଣା, ଟଙ୍କା ପଇସାକୁ କେଉଁଠି ରଖିବ ?



୮. ବୁଢ଼ୀର ପୁଅ ଟାଟାରେ କାମ କରେ । ତା'ର ଚିଠି ବୁଢ଼ୀ ପାଖରେ କିପରି ପହଞ୍ଚିବ ତୀର ଚିହ୍ନ ଦେଇ ସୂଚାଅ ।








କ'ଣ ଶିଖିବେ

ଭାଷା ◆ କ୍ର,ପ୍ର,ମ୍ର,ତ୍ନ,ଦ୍ଧ, ଚିହ୍ନିବେ, ପଢ଼ିବେ,ଲେଖିବେ ଓ ବ୍ୟବହାର ଜାଣିବେ ।

ପରିବେଶ ◆ ବ୍ୟାଙ୍କ, ପୋଷ୍ଟ ଅଫିସ୍ ଇତ୍ୟାଦି ବିଷୟରେ ଧାରଣା ପାଇବେ ।

ସୂଚନା

◆ ଶବ୍ଦରୁ ଅକ୍ଷର ଚିହ୍ନିବେ ।

ପ୍ରସ୍ତୁତି

କେତେ ଭାଇ କେତେ

| ପିଲାମାନେ ଗୋଲରେ ବୁଲିବେ । ଶିକ୍ଷକ ଯେଉଁ ଶବ୍ଦ କହିବେ ପିଲାମାନେ ସେହି ଶବ୍ଦରେ ଥିବା ଅକ୍ଷର ସଂଖ୍ୟାକୁ ନେଇ ଦଳ ହେବେ । ଯଥା- ବସ୍ତ୍ର-(୨)ଜଣ କିଆ ଦଳ ଉତ୍କଳ-(୩)ଜଣିଆ ଦଳ |
|---|

ଅଭ୍ୟାସ ◆ ଦିଆଯାଇଥିବା ପ୍ରଶ୍ନ ଅନୁଯାୟୀ

ଉପକରଣ (ଅକ୍ଷର କାର୍ଡ଼) ନିମ୍ନଲିଖିତ ଶବ୍ଦକୁ ନେଇ

ଉତ୍କଳ, ଉତ୍ପଳ, ଉତ୍ପାତ, ବିତ୍ପାତ

ସତ୍କାର, ଚିତ୍କାର, ଉତ୍ପାଦନ, ଉତ୍ସବ

ଦଳଗତ କାର୍ଯ୍ୟ ଛାଡ଼ି ଯାଇଥିବା ଅଂଶକୁ ପୂରଣ କର ।

ସେଠାରେ ବୁଢ଼ୀଟିଏ ଥିଲା ।................................... ନାତୁଣି ଆସିବାର ଥାଏ । ଖଡ଼ ଖଡ଼ ଶବ୍ଦ ଶୁଣି ........................

...............................ଲୁଚିଗଲେ ।

ଅନ୍ୟ କାର୍ଯ୍ୟ

ବାକ୍ୟ ଗୁଡ଼ିକୁ ସଜାଡ଼ି ଲେଖ ।

◆ କ୍ଷୀରୀ ବିଶ୍ରାମ କର ଥଣ୍ଡା ହେବାଯାଏ ଟିକିଏ ।
◆ ସେ ଖଡ଼ ଖଡ଼ ଚିତ୍କାର କଲା ଶବ୍ଦ ଶୁଣି ।
◆ ଗରମ ଗରମ ଖାଇଥାନ୍ତି ଉତ୍ସବରେ କ୍ଷୀରୀ ମିଠା ମିଠା ।

ପ୍ରକଳ୍ପ

ମ୍ର, ତ୍ନ,ଦ୍ଧ, କ୍ର, ପ୍ର, ଅକ୍ଷର ବ୍ୟବହୃତ ହୋଇଥିବା ଶବ୍ଦର ଫ୍ଲାସ୍ କାର୍ଡ଼ ତିଆରି କରିବେ ।

ପାଠ-୨୫

# ମୂଷା ଯାଉଛି ଦେଖ

ସମୟ - ୮ ପିରିୟଡ୍



ମୂଷାଟିଏ ଥିଲା । ତା'ର ଛଅଟି ଲାଞ୍ଜ । ପିଲାମାନେ ଖେଳୁଥିବାର ଦେଖି ସେଠାକୁ ଆସିଲା । ତାକୁ ଦେଖି ସମସ୍ତେ ଥଟ୍ଟା କଲେ ।



ମୂଷାଟିକୁ ବାଧିଲା । ସେ ନଈକୁ ଯାଇ କହିଲା- ''ନଈରେ ନଈ,ଗୋଟିଏ ଲାଞ୍ଜକୁ ଧୋଇ ନେ ତୁହି ।'' ନଈ ସେଇଆ କଲା । ମୂଷା ଭାବିଲା ମୋତେ ଏବେ ପିଲାମାନେ ତାଙ୍କ ସହ ଖେଳେଇବେ । ତଥାପି ସେଇ ଥଟ୍ଟା ।

ସେ ବ୍ୟସ୍ତ ହୋଇ ନଈକୁ ଯାଇ କହିଲା- ''ନଈରେ ନଈ' ଆଉ ଦୁଇଟି ଧୋଇ ନେ ତୁହି'' । ପିଲାଏ କ'ଣ ଛାଡ଼ନ୍ତି ତାକୁ ! ଦେଖିଲା ମାତ୍ରକେ ଅଟ୍ଟହାସ ଆରମ୍ଭ କରିଦେଲେ ।



ଏବେ ବି ସେ ନଈକୁ ଗଲା ଓ କହିଲା- ''ନଈରେ ନଈ, ଗୋଟିଏ ରଖି ବାକି ଧୋଇ ନେ ତୁହି'' । ନଈ ପୂର୍ବପରି କଲା । ପିଲାମାନେ ନ ଦେଖି ପାରିବା ଭଳି ପାଖରେ ଥିବା ଅଟ୍ଟାଳିକାର କାନ୍ଥରେ ଥିବା ଲମ୍ବା ନଳ ଉପରେ ଆସ୍ତେ ଆସ୍ତେ ଚଢ଼ୁଥାଏ । ପିଲାମାନେ ଆଉ ଜୋରରେ ଥଟ୍ଟା କଲେ । ମୂଷାଟି ପୁଣି ବ୍ୟସ୍ତ ହେଲା ।

ଆଉ କିଛି ନଭାବି ସିଧା ନଈକୁ କହିଲା -''ନଈରେ ନଈ, ବାକି ଗୋଟାକ ବି ଧୋଇନେ ତୁହି''। ନଈ ହସିଲା । ସବୁତକ ଧୋଇ ନେଲା ।

ସେ ପିଲାଙ୍କ ପାଖକୁ ଗଲାରୁ ଗୋଟିଏ ପିଲା ସଙ୍ଗେ ସଙ୍ଗେ କହି ଉଠିଲା-

'' ଆସିଲାରେ ମୂଷା ଆସିଲା
ଲାଞ୍ଜ ତା'ର କାହିଁ ହଜିଲା ।''



## ଅଭ୍ୟାସ

୧. ପଢ଼ ।

କନ୍ଥା, କାନ୍ଥ, ମନ୍ଥ, ମନ୍ଥନ, ପେନ୍ଥା, ଗ୍ରନ୍ଥ, ସନ୍ଥ, ହସ୍ତ, ରାସ୍ତା, ହସ୍ତୀ, ସମସ୍ତ, ଅସ୍ତ, ସ୍ତମ୍ଭ, ବସ୍ତି, ଦସ୍ତା, ଗୁପ୍ତ, ସପ୍ତମ, ସପ୍ତାହ, ଗୁପ୍ତଚର, ସମାପ୍ତ, ସପ୍ତଫେଣୀ

୨. ମାତ୍ରା ( ୍, ୍ ) ଲଗାଇ ଶବ୍ଦ ଗଢ଼ ।

କନା, ମନ, ହସ, ଗୁପ, ସପମ, ସମ୍ଭ, ମନନ, ସନ, ଅସ, ସପାହ ।

୩. ମଝି ଓ ବାହାର ଘରୁ ଅକ୍ଷର ନେଇ ଶବ୍ଦ ଗଢ଼ । (ଦୁଇ, ତିନି, ଚାରି ଅକ୍ଷର ବିଶିଷ୍ଟ)




_______, _______, _______




_______, _______, _______, _______




_______, _______, _______

୪. ଲେଖ ।

ଯେପରି-
୧. ମା' ରାନ୍ଧେ — ରାନ୍ଧିବା ଘରେ
୨. ଆମେ ଖେଳୁ — _______
୩. ଆମେ ଖାଉଁ — _______
୪. ଆମେ ପଢ଼ୁ — _______
୫. ଆମେ କିଣୁ — _______
୬. ଆମେ ପୂଜାକରୁ — ମନ୍ଦିରରେ
୭. ଆମେ ଟଙ୍କା ଜମାରଖୁ — _______
୮. ଆମେ ଚିଠି ପଠାଉ — _______
୯. ଆମେ ଗାଧୋଉ — _______
୧୦. ଆମେ ଖବର କାଗଜ ଓ ବହି ପଢ଼ୁ — _______
୧୧. ଆମେ ପିଇବା ପାଣି ଆଣୁ — _______

୫. ରାନ୍ଧିବା ଘରର ଥାକରେ ବୋତଲ ବା ଜାର୍‌ରେ ଅନେକ ଜିନିଷ ଥିବ । ଯଥା- ସୋରିଷ, ଡାଲି, ଫୁଟଣ, ହଳଦୀ, ଚିନି, ଚା'ପତି, କ୍ଷୀର, ପାଣି, ମସଲା, ମରିଚ, ତେଲ, ଲୁଣ, ଚାଉଳ, ଅଟା, ଘିଅ, ଇତ୍ୟାଦି ।

ଏବେ ତୁମେ କ'ଣ ତିଆରି କରିବ ଏମାନଙ୍କୁ ନେଇ ଲେଖ ।

ଯେପରି- ଚା'ପତି, କ୍ଷୀର ଓ ଚିନି = ଚା'

ଲେମ୍ବୁ,ଚିନି ଓ ପାଣି =

ବେସନ, ଲୁଣ ଓ ତେଲ =

ଅଟା, ଲୁଣ ଓ ଘିଅ =

ମୁଗ, ଲୁଣ ଓ ହଳଦୀ =

କିଛି ତୁମେ ବି କର ।



୬. କିଏ କେଉଁଠି ରହେ ଯୋଡ଼ ଓ ଗୋଟିଏ ଗୋଟିଏ ବାକ୍ୟ ଲେଖ ।

| | |
|---|---|
| ପାଣି | ମଣିଷ |
| ଗାତ | ସିଂହ |
| ଗୁମ୍ଫା | ମୂଷା |
| ବସା | ମାଙ୍କଡ଼ |
| ଗଛ | ପକ୍ଷୀ |
| ଘର | ମାଛ |

ଯେପରି – ପାଣି- ମାଛ – ମାଛ ପାଣିରେ ରହେ ।



**କ'ଣ ଶିଖିବେ**

ଭାଷା ◆ ଷ୍ଠ,ଛ,ଟ ଚିହ୍ନିବେ ଓ ବ୍ୟବହାର କରିବେ ।

ପରିବେଶ ◆ ରୋଷେଇ ଘରର ବିଭିନ୍ନ ସାମଗ୍ରୀ ଓ ବ୍ୟବହାର ଜାଣିବେ ।

**ସୂଚନା**

'ଟ' ଅକ୍ଷର ବାରମ୍ବାର ଗପରେ ବ୍ୟବହାର ହୋଇଛି ।

**ପ୍ରସ୍ତୁତି**

- ◆ ଦୁଇ ଦଳ କରାଯିବ ।
- ◆ ସାମନା- ସାମନି ବସିବେ ।
- ◆ ଗୋଟିଏ ଦଳ ଫ୍ଲାସ କାର୍ଡ଼ ଦେଖାଇବେ- ଅନ୍ୟଦଳ ବିପରୀତ ଶବ୍ଦ କହିବେ । ଯେପରି- ପୁଅ- ଝିଅ

ସମ୍ପର୍କ ଖେଳ

| | 'କ' ଦଳ | 'ଖ'ଦଳ |
|---|---|---|
| 'କ' ଦଳ ପଚାରିଲେ 'ଖ' ଦଳ କହିବେ । 'ଖ'ଦଳ ପଚାରିଲେ 'କ' ଦଳ କହିବେ । | ମାଆଙ୍କ ବାପା<br>ବାପାଙ୍କ ଭାଇ | |

**ପିଲାଙ୍କ କାର୍ଯ୍ୟ**

- ◆ ଗପକୁ ପଢ଼ିବେ ।
- ◆ 'ଟ' ଅକ୍ଷରକୁ ଗୋଲ୍ ବୁଲାଇବେ ।

**ଉପକରଣ**

◆ ଶବ୍ଦ କାର୍ଡ଼ ପୁଅ
ଝିଅ

**ଦଳଗତ କାର୍ଯ୍ୟ**

- ◆ ଦୁଇଦଳ ହେବେ ।
- ◆ ଗୋଟିଏ ଦଳ ଶବ୍ଦ କାର୍ଡ଼ ଦେଖାଇଲେ ଅନ୍ୟଦଳ ବହୁ ବଚନ କହିବେ ।

ଯଥା- ମୁଁ-ଆମେ
ସେ- ସେମାନେ

**ଅନ୍ୟକାର୍ଯ୍ୟ**

ଗଛ-ଲତା
ରେଳଗାଡ଼ି- ଅଟ୍ଟାଳିକା
କୌଣସି ଦୁଇଟି ଚିତ୍ରକୁ ସଂପର୍କିତ କରି ବାକ୍ୟ କହିବେ ଓ ଲେଖିବେ ।

**ପ୍ରକଳ୍ପ**

◆ 'ଟ' ଅକ୍ଷରର ଫ୍ଲାସକାର୍ଡ଼ ତିଆରି କର ।

**ଉପକରଣ**

◆ ଚିତ୍ର କାର୍ଡ଼

# ଷଷ୍ଠ ଏକକ ପରୀକ୍ଷଣ

পাঠ-୨୬

# ମିକିର ଯଜ୍ଞ ଦେଖା

ସମୟ - ୮ ପିରିୟଡ୍

ସେଦିନ ରବିବାର ଥିଲା । ମାଆ ମିକିକୁ କହିଲେ ଆଜି ଯଜ୍ଞ ଦେଖିବାକୁ ଯିବା । ଯଜ୍ଞ ଦେଖି ଯିବା କଥା ଶୁଣି ମିକିର ମନ ଭାରି ଖୁସି । ସେ ତା' ପଢ଼ା କାମ ଶୀଘ୍ର ଶେଷ କଲା । ଗୋଡ଼, ହାତ, ମୁହଁ ଧୋଇ ସାରି ସଫା ଫ୍ରକ୍ ପିନ୍ଧିଲା । ମାଆଙ୍କ କାମ ସରି ନଥାଏ । ତେଣୁ ସେ ତା' କଣ୍ଢେଇ ଧରି ଖେଳିଲା । ଖେଳୁ ଖେଳୁ ଆଖି ଲାଗିଗଲା । ସପନଟିଏ ଦେଖିଲା ।

ସେ ଓ ତା' କଣ୍ଢେଇ ଘୋଡ଼ାରେ ବସି ଯଜ୍ଞ ଦେଖି ବାହାରିଲେ । ମନ ଭାରି ଖୁସି, ଯଜ୍ଞ ପାଖରେ ପହଞ୍ଚିଲେ । ଭାରି ଭିଡ଼ ହୋଇଥାଏ । ଭିଡ଼ ଠେଲି ଆଗକୁ ଯାଇ ଦେଖିଲେ ଯଜ୍ଞବେଦୀ ପାଖରେ ଅନେକ ସାଧୁ, ଜ୍ଞାନୀ, ଗୁଣି ଲୋକ ବସି ମନ୍ତ୍ର ପାଠ କରୁଥିଲେ । ଯଜ୍ଞବେଦୀରେ ଘିଅ ଢାଳୁଥିଲେ ।

ଯଜ୍ଞ ଦେଖିସାରି ପାଖରେ ହେଉଥିବା ମେଳା ଦେଖିବାକୁ ଗଲେ । ମେଳାରେ ଅନେକ ଦୋକାନ ଥିଲା । ଭଳିକି ଭଳି ଜିନିଷ । ସେମାନେ ବେଲୁନ୍ କିଣିବାକୁ ଗଲେ । କିଣିବା ସମୟରେ ପାଟିତୁଣ୍ଡ ଶୁଭିଲା, ପୋଡ଼ିଗଲା...... ପୋଡ଼ିଗଲା । ଧାଇଁଆସ ।

ଠିକ୍ ସେତିକିବେଳେ ମାଆ ମିକିକୁ ହଲେଇ ଦେଲେ । ପଚାରିଲେ କ'ଣ ହେଲା, କିଛି ସପନ ଦେଖିଲୁ କି ?

ମିକିର ସ୍ୱପ୍ନ ଭାଙ୍ଗିଗଲା ।



# ଅଭ୍ୟାସ

୧. ପଢ଼ ଓ ଲେଖ ।

ଜ୍ଞାନ ______, ______, ______, ______, ______

ଅବଜ୍ଞା ______, ______, ______, ______, ______

ବିଜ୍ଞ ______, ______, ______, ______, ______

ଯନ୍ତ୍ର ______, ______, ______, ______, ______

ମନ୍ତ୍ର ______, ______, ______, ______, ______

ଶସ୍ତ୍ର ______, ______, ______, ______, ______

ବସ୍ତ୍ର ______, ______, ______, ______, ______

୨. ଗପରେ 'ଜ୍ଞ' ଯେଉଁଠି ଅଛି, ସେଠି ଗୋଲ ବୁଲାଅ । ଯେପରି - ଜ୍ଞ

୩. ଜ୍ଞ, ନ୍ତ୍ର, ସ୍ତ୍ର କୁ ନେଇ ତୁମେ ଜାଣିଥିବା କେତେଗୁଡ଼ିଏ ଶବ୍ଦ ଲେଖ । ଯେପରି - ଅଜ୍ଞ

______, ______, ______, ______, ______

______, ______, ______, ______, ______

୪. ତୁମେ ଦେଖିଥିବା ହାଟ ବଜାରରେ କ'ଣ କ'ଣ ମିଳେ ତା'ର ଏକ ତାଲିକା କର ।

______, ______, ______, ______, ______

______, ______, ______, ______, ______

______, ______, ______, ______, ______

______, ______, ______, ______, ______

______, ______, ______, ______, ______

______, ______, ______, ______, ______

୫. ହାଟରେ ମିଳୁନଥିବା ଜିନିଷଗୁଡ଼ିକର ତାଲିକା କର ।

______, ______, ______, ______, ______

______, ______, ______, ______, ______

**କ'ଣ ଶିଖିବେ**

ଭାଷା ◆ 'ଙ୍କ', ସ୍ତ, ନ୍ତ ଯୁକ୍ତାକ୍ଷରକୁ ଚିହ୍ନିବେ ।

ପରିବେଶ ◆ ହାଟବଜାର ସମ୍ପର୍କରେ ଜାଣିବେ ।

**ସୂଚନା**

ଭାଷା ◆ ଗପରେ 'ଙ୍କ' 'ସ୍ତ' 'ନ୍ତ' ର ବ୍ୟବହାର କରାଯାଇଛି ।

ପରିବେଶ ◆ ହାଟବଜାର ସମ୍ପର୍କରେ ଧାରଣା ଦିଆଯାଇପାରିବ ।

**ପ୍ରସ୍ତୁତି**

ନା-ନାହିଁ

ପିଲାଏ ଗୋଲାକାରରେ ବସିବେ । ଶିକ୍ଷକ ବୁଲିବୁଲି ପିଲାଙ୍କୁ ପ୍ରଶ୍ନ ପଚାରିବେ । ଯାହାକୁ ପଚାରିବେ ସେ ଉତ୍ତର ଦେଲାବେଳେ ଏଭଳି ଉତ୍ତର ଦେବେ ଯେପରି 'ନା' ବା 'ନାହିଁ' ଆଗରେ ଲାଗୁନଥିବ । ଯିଏ ନା ବା ନାହିଁରେ ଉତ୍ତର ଦେବେ ସେ ମଝିକୁ ଆସି ଖେଳ ପରିଚାଳନା କରିବ ।

ଗୋଲ୍ ଗୋଲ୍

ପିଲାମାନେ ଅର୍ଦ୍ଧ ଗୋଲାକାରରେ ବସିବେ । ଶିକ୍ଷକ ସାମ୍ନାରେ ବସି କହିବେ । ଅଜାଙ୍କର ପଗଡ଼ି ଗୋଲ୍, ଆଈଙ୍କର ଚୁଡ଼ି ଗୋଲ- ପିଲାଏ ପାଳି ଧରିବେ । ତା'ପରେ ପାଖ ପିଲାଙ୍କୁ ଲକ୍ଷ୍ୟ କରି କହିବେ ତୁମେ କହ ଗୋଲ୍ ଗୋଲ୍ । ପିଲାଟି ଗୋଟିଏ ଗୋଲ୍ ଜିନିଷର ନାମ କହିବେ । ଯଥା: ମିଠେଇ ଗୋଲ୍ । ଏହିପରି କ୍ରମାନ୍ୱୟରେ ଚାଲିବ ।

**ଦଳଗତ କାର୍ଯ୍ୟ**

ପିଲାମାନଙ୍କୁ ଦୁଇଦଳ କରାଯିବ । ଦଳେ ପିଲା ବଜାର ବସାଇବେ । ଫ୍ଲାସ୍‌କାର୍ଡ଼ରେ ବିଭିନ୍ନ ଜିନିଷର ନାମ- ମାଟି, ଗୋଡ଼ି, ପତ୍ର ମଧ୍ୟ ବ୍ୟବହାର କରାଯିବ । ବିଦ୍ୟାଳୟରେ ବଣ ଭୋଜି ହେବ । ଅନ୍ୟଦଳ ବଜାର କରିବେ ।

**ଅନ୍ୟକାର୍ଯ୍ୟ**

ତଳେ ଗୋଲ୍ ବୁଲାଇ ଦୋକାନର ନାମ ଲେଖାଯିବ ।

ଯେମିତି

ସଉଦା ଦୋକାନ — ଲୁଗା ଦୋକାନ — ଲୁହା ଦୋକାନ

ଗୋଟିଏ ପଟେ ଫ୍ଲାସ କାର୍ଡ଼ରେ ବିଭିନ୍ନ ଜିନିଷର ନାମ ଲେଖା ହୋଇଥିବ । ପ୍ରତ୍ୟେକ ପିଲା କାର୍ଡ଼ ଉଠାଇବେ, ସେହି ଜିନିଷଟି କେଉଁ ଦୋକାନରୁ କିଣିବେ ସେଠାକୁ ଯିବେ ।

**ପ୍ରକଳ୍ପ କାର୍ଯ୍ୟ**

- ଗାଁ ମାନଙ୍କର କେଉଁ ଜିନିଷ ସହରକୁ ବିକ୍ରି ପାଇଁ ଆସେ ତା'ର ତାଲିକା କର ।
- ସହରରୁ କେଉଁ ଜିନିଷ କିଣାଯାଇ ଗାଁକୁ ଆସେ ତାଲିକା କର ।
- ନିକଟରେ ହେଉଥିବା ଯାନିଯାତ୍ରାର ତାଲିକା କର ।

## ନିଆଁ ଲିଭା

ପିଲାମାନେ ଗୋଟିଏ ପଟେ ଠିଆ ହେବେ ଓ ନିଜ ପାଦ ଚାରିପଟେ ଏକ ଗୋଲ୍ ବୁଲାଇବେ । ଆଗରେ ଗୋଟିଏ ପିଲା ପଛକରି ଠିଆ ହୋଇ ଗାଇବ-

ତଳ ସାହିରେ ନିଆଁ ଲାଗିଛି,
ହୁ ହୁ ହୋଇ ନିଆଁ ଜଳୁଛି,
କ'ଣ କରିବ ଭାଇ ?

ଗୀତ ବୋଲି ପିଲାମାନେ ଆଗକୁ ଆଗକୁ ଯାଉଥିବେ । ଗୀତ ବନ୍ଦ ହେଲେ ଆଗ ପିଲା ପଛକୁ ବୁଲିବ ଓ ଚାଲୁଥିବା ପିଲାମାନେ ଠିଆ ହୋଇ ଉତ୍ତର ଦେବେ ଯଥା- ପାଣି ଆଣିବୁ ଭାଇ

ବାଲି ପକାଇବୁ ଭାଇ
ମାଠିଆ ଆଣିବୁ ଭାଇ
ଜିନିଷ କାଢ଼ିବୁ ଭାଇ
ଏହିପରି........

ଗୋଟିଏ ଉତ୍ତର ଦେଲାପରେ ସମସ୍ତେ ପଛକୁ ଫେରି ଗୋଟିଏ ଗୋଟିଏ ଜାଗା ଅଧିକାର କରିବେ । ଆଗ ପିଲାମଧ୍ୟ ଆସିବ । ଯିଏ ଯାଗା ପାଇବ ନାହିଁ ସେ ଆଗକୁ ଆସି ଖେଳାଇବ ।

**ଦଳଗତ କାର୍ଯ୍ୟ** ପିଲାମାନେ ଦୁଇ ଦଳରେ ବିଭକ୍ତ ହେବେ । ଗୋଟିଏ ଦଳରେ ବିଭିନ୍ନ ପନିପରିବାର ନାମ ଲେଖା କାର୍ଡ଼ ରହିବ । ଅନ୍ୟ ଦଳରେ କାଗଜର (ମିଛ ମିଛିକା) ଟଙ୍କା ରହିବ । ହାଟରେ ଯେପରି କିଣାବିକା ହୁଏ, ସେହିପରି ଦୃଶ୍ୟ ଶ୍ରେଣୀ କକ୍ଷରେ ଚାଲିବ ।

ଉପକରଣ ◆ ଫ୍ଲାସ୍ କାର୍ଡ଼ (ବିଭିନ୍ନ ପନିପରିବା ଓ ଟଙ୍କା)

পাঠ-২৭

# ଆମ ଜାତୀୟ ପର୍ବପର୍ବାଣି

ସମୟ - ୧୫ ପିରିୟଡ୍

ପ୍ରତିବର୍ଷ ଆମେ ଅଗଷ୍ଟ ୧୫ତାରିଖକୁ ସ୍ୱାଧୀନତା ଦିବସ ଏବଂ ଜାନୁଆରୀ ୨୬ ତାରିଖକୁ ସାଧାରଣତନ୍ତ୍ର ଦିବସ ରୂପେ ପାଳନ କରିଥାଉ । ଏହି ଦିନମାନଙ୍କରେ ଜାତୀୟ ପତାକା ଉଡ଼ାଉ ଓ ଜାତୀୟ ସଙ୍ଗୀତ ଗାନ କରୁ । ତା ସାଥେ ସାଥେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଜନ୍ମଦିନ ଅକ୍ଟୋବର ୨ ତାରିଖକୁ ମଧ୍ୟ ଜାତୀୟ ପର୍ବ ରୂପେ ପାଳନ କରିଥାଉ । ଜାତୀୟ ପର୍ବ ପାଳନ କରି ଆମେ ଦେଶ ପାଇଁ ଲଢ଼ିଥିବା ମହାନ୍ ଲୋକ ମାନଙ୍କୁ ମନେ ପକାଉ ଓ ସମ୍ମାନ ଦେଉ । ଜାତୀୟ ପର୍ବ ଛଡ଼ା ଆମେ ଆହୁରି ଅନେକ ପର୍ବ ଗାଁ ଗହଳିରେ, ଘରେ ଘରେ ଏବଂ ବିଦ୍ୟାଳୟ ମାନଙ୍କରେ ପାଳନ କରିଥାଉ । ବିଭିନ୍ନ ଅଞ୍ଚଳର ଲୋକମାନେ ବିଭିନ୍ନ ପର୍ବ ପାଳନ କରିଥାଆନ୍ତି । ଏହାଦ୍ୱାରା ଆମ ଭିତରେ ଭାଇ ଭାଇ ଭାବ ଓ ସ୍ନେହ ମମତା ବଢ଼ିଥାଏ ।

## ଜାତୀୟ ସଂଗୀତ

ଜାତୀୟ ସଂଗୀତ ଗାନ କରିବା ସମୟରେ ଠିଆ ହୋଇ ଗାଇବା ଉଚିତ ।

"ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ- ଭାଗ୍ୟ- ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜୁରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ- ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳ ଦାୟକ ଜୟ ହେ,
ଭାରତ- ଭାଗ୍ୟ- ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।"



# ଅଭ୍ୟାସ

୧. କହ ଓ ଲେଖ ।
ଜାତୀୟ ପତାକାରେ କେତୋଟି ରଙ୍ଗ ଅଛି ?

୨. ଜାତୀୟ ସଙ୍ଗୀତରେ କେଉଁ କେଉଁ ରାଜ୍ୟର ନାମ ଅଛି ?

୩. ଜାତୀୟ ସଙ୍ଗୀତରେ କେଉଁ କେଉଁ ନଦୀର ନାମ ଅଛି ?

୪. ଜାତୀୟ ସଙ୍ଗୀତରେ 'ଜୟ' ଶବ୍ଦ କେତେ ଥର ଅଛି ?

୫. ଚିତ୍ର ଦେଖି, ଚିତ୍ରରେ ଯାହା ନାହିଁ, ତାକୁ ପୂରଣ କର । ଜାତୀୟ ପତାକାରେ ରଙ୍ଗ ଦିଅ ।



୬. ଜାତୀୟ ନେତାମାନଙ୍କର ଛବି ସଂଗ୍ରହ କରି ଆଲବମ୍‌ଟିଏ ତିଆରି କର ।

୭. ଟିକିଏ ଭାବ ଓ ନିଜେ ଲେଖ ।

ତୁମ ବିଦ୍ୟାଳୟରେ ସ୍ୱାଧୀନତା ଦିବସ କିପରି ପାଳନ କଲ, ସେ ବିଷୟରେ କିଛି ଲେଖ ।

_______________

_______________

_______________

_______________

_______________

_______________

_______________

୮. ଲେଖ ।

ତୁମ ଗାଁରେ କେଉଁ କେଉଁ ପର୍ବ ପାଳନ କର ତା'ର ଏକ ତାଲିକା କର ।

_______________

_______________

_______________

_______________

_______________

_______________

_______________



୯. କାହାର ଜନ୍ମଦିନ କେବେ ଲେଖ ।

ଯେପରି - ମହାତ୍ମା ଗାନ୍ଧୀ- ଅକ୍ଟୋବର ୨ ତାରିଖ

ଜବାହାରଲାଲ ନେହେରୁ- _______________

ଲାଲ୍ ବାହାଦୁର ଶାସ୍ତ୍ରୀ- _______________

ସୁଭାଷ ଚନ୍ଦ୍ର ବୋଷ- _______________



୧୦. କେଉଁ କେଉଁ ଜାତୀୟ ନେତାଙ୍କ ଜନ୍ମଦିନରେ ତୁମ ବିଦ୍ୟାଳୟ ଛୁଟି ହୁଏ ?

କ'ଣ ଶିଖିବେ

ଭାଷା ◆ ଜାତୀୟ ସଙ୍ଗୀତ ଆବୃତ୍ତି କରି ପାରିବେ ଓ ଅନୁଚ୍ଛେଦ ଲେଖି ପାରିବେ ।

ପରିବେଶ ◆ ଜାତୀୟ ପର୍ବକୁ ଜାଣିବେ ।

ସୂଚନା

- ଜାତୀୟ ପର୍ବ, ଜାତୀୟ ସଙ୍ଗୀତ ସମ୍ବନ୍ଧରେ ଦିଆଯାଇଛି ।
- ସ୍ୱାଧୀନତା ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମୀ ଏବଂ ଜାତୀୟ ନେତା ମାନଙ୍କ ସମ୍ବନ୍ଧରେ ଆଲୋଚନା କରିବେ ।
- ଜାତୀୟ ପତାକାର ରଙ୍ଗ, ଗଠନ ।
- ନିଜ ଅଞ୍ଚଳ ଓ ଅନ୍ୟ ଅଞ୍ଚଳରେ ପାଳିତ ହେଉଥିବା ପର୍ବ ସମ୍ବନ୍ଧରେ ଆଲୋଚନା ।

ପ୍ରସ୍ତୁତି

ଭାରତ ଦର୍ଶନ ଖେଳ

ଶିକ୍ଷକ ପିଲାଙ୍କୁ ଶ୍ରେଣୀରେ ଗୋଲ୍‌ରେ ଠିଆ କରାଇ କଦମ୍ ତାଲ୍ କରାଇ ଗୀତ ବୋଲିବେ । ପିଲାମାନେ ଗୀତ ପାଳି ଧରିବା ସହ କଦମ୍ ତାଲ୍ କରି ଚାଲିବେ ।

ଗୀତ- ଆସରେ ପିଲାଏ ଆମେ
ଖେଳ ଖେଳିବା ରେଳର
ସେଇ ରେଳରେ ବୁଲି ଆସିବା ଭାରତ ବର୍ଷ ଆମର
ବନ୍ଦେ ମାତରମ୍, ବନ୍ଦେ ମାତରମ୍, ବନ୍ଦେ ମାତରମ୍, ବନ୍ଦେ ମାତରମ୍ ।
ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ

ଆମେ ଜାଣିବା

ଜାତୀୟ ପକ୍ଷୀ- ମୟୂର
ଜାତୀୟ ପଶୁ- ବାଘ
ଜାତୀୟ ଫୁଲ- ପଦ୍ମ

ଦଳଗତ କାର୍ଯ୍ୟ

- ଜାତୀୟ ପର୍ବ ବିଷୟରେ ଆଲୋଚନା କରିବେ ।
- ଜାତୀୟ ପର୍ବ ଓ ଆଞ୍ଚଳିକ ପର୍ବ ଭିତରେ କ'ଣ ତଫାତ୍ ଅଛି ପିଲାମାନେ ଦଳ ଭିତରେ ଆଲୋଚନା କରିବେ ।

ପ୍ରକଳ୍ପ

- ଜାତୀୟ ପତାକାର ଚିତ୍ର ଅଙ୍କନ କରି ତହିଁରେ ଉପଯୁକ୍ତ ରଙ୍ଗ ଦିଅ ।
- ଜାତୀୟ ନେତାଙ୍କ ଫଟୋ ସଂଗ୍ରହ କରି ଏକ ଆଲବମ୍ ତିଆରି କର ।

ଚାରିଆଡ଼େ ଆମେ ବୁଲିବା
ମଧ୍ୟ ଭାରତ ଦର୍ଶନ କରି
ନିଜ ଘରକୁ ଫେରିବା ।
ବନ୍ଦେ ମାତରମ୍ ,ବନ୍ଦେ ମାତରମ୍, ବନ୍ଦେ ମାତରମ୍, ବନ୍ଦେ ମାତରମ୍

- ବିଭିନ୍ନ ମହାନ୍ ବ୍ୟକ୍ତିଙ୍କ ଛବି ଚିହ୍ନିବେ ଓ ତାଙ୍କ ବିଷୟରେ ଯାହା ଜାଣିଥିବେ କହିବେ ।

**ଶିକ୍ଷକଙ୍କ କାମ**

ପ୍ରଶ୍ନ

ଯଥା- ବିଦ୍ୟାଳୟରେ କି କି ପର୍ବ ପାଳନ କରାଯାଏ ?

- କେଉଁ କେଉଁ ଦିନ ଜାତୀୟ ପତାକା ଉଡ଼ାଯାଏ ଓ ଜାତୀୟ ସଙ୍ଗୀତ ଗାନ କରାଯାଏ ?
- ଆମେ କାହିଁକି ଜାତୀୟ ପର୍ବ ପାଳନ କରୁ ?
- ପିଲାଙ୍କୁ ଠିକ୍ ଭାବରେ ଠିଆ କରାଇ ଜାତୀୟ ସଙ୍ଗୀତ ଆବୃତ୍ତି କରାଇବେ ।

**ପିଲାଙ୍କ କାମ**

- ଭାରତ ଦର୍ଶନ ଖେଳରେ ଅଂଶ ଗ୍ରହଣ କରିବେ ।
- ବିଭିନ୍ନ ମହାନ୍ ବ୍ୟକ୍ତିଙ୍କୁ ଛବିରେ ଚିହ୍ନିବେ ।
- ଆଲୋଚନା ରେ ଅଂଶ ଗ୍ରହଣ କରିବେ ।
- ଜାତୀୟ ସଙ୍ଗୀତ ଆବୃତ୍ତି କରିବେ ।

**ଦଳଗତ କାର୍ଯ୍ୟ**

- ବିଭିନ୍ନ ମହାନ୍ ବ୍ୟକ୍ତିଙ୍କ ଛବିକୁ ଚିହ୍ନିବେ ଓ ନାମ ଖାତାରେ ଲେଖିବେ ।
- ସାଧା କାଗଜରେ ଜାତୀୟ ପତାକା ଚିତ୍ର କରି ରଙ୍ଗ ଦେବେ ।

ଉପକରଣ ◆ ଜାତୀୟ ପତାକା, ରଙ୍ଗ ,ତୂଳୀ, ବିଭିନ୍ନ ମହାନ୍ ବ୍ୟକ୍ତିଙ୍କ ଫଟୋ, ଯଥା- ମହାତ୍ମା ଗାନ୍ଧୀ,ନେହେରୁ, ସୁବାଷ ଚନ୍ଦ୍ର ବୋଷ ଓ ଲାଲ୍ ବାହାଦୁର୍ ଶାସ୍ତ୍ରୀ ।

পাঠ-২৮

# ଆମଘର

ସମୟ - ୧୬ ପିରିୟଡ୍

ଏଇ ଘରଟିରେ ଜନମ ମୋର,
ଘର ନୁହେଁ ଇଏ ସରଗ ପୁର ।
ଏଇ ଘରେ ଆମେ
ଏକାଠି ଥାଉ,
ଏକାଠି ଖାଉ,
ଏକାଠି ବସୁ
ଏକାଠି ହସୁ ·
ବୁଢ଼ୀମା' ପାଶେ,
ଗପ ଶୁଣୁ ଶୁଣୁ ନିଦଟି ଆସେ ।





ଏଇଟି ଆମର ରୋଷେଇ ଘର,
ରଖିବା ତାହାକୁ ସଫା ସୁତର ।
ଏଇଠାରେ ମାଆ
ପରିବା କାଟେ
ବେସର ବାଟେ
ଡାଲି ରଗଡ଼େ
ଶାଗ ଖରଡ଼େ,
ଗଡ଼ଇ ପିଠା
ଆରିସା, କାକରା, ଆଃ କି ମିଠା ! !

ଏଇଟି ଆମର ଫୁଲ ବଗିଚା,
ତଳେ ପଡ଼ିଛି କି ଘାସ ଗାଲିଚା ।
ଉଡ଼ି ଉଡ଼ି ଆସେ
ପରଜା ପତି,
ତରକା ଅତି !
ଏଇଠି ବୁଲେ
ଫୁଲରେ ଝୁଲେ,
କଳସୀ ଆଣି
ଫୁଲ ଗଛ ମୂଳେ ଦିଏ ମୁଁ ପାଣି ।





ଏଇଟି ମୋହର ପଢ଼ିବା ଘର
ସଜାଇ ରଖେ ମୁଁ ବହି ପତର
ଏଇ ଘରେ ନିତି
ମନ ହରଷେ.
ଗଣିତ କଷେ ;
ମୋ ବହି ପଢ଼େ
ଖେଳଣା ଗଢ଼େ,
ଧରେ ମୁଁ ତୂଳୀ
ଛବି କରି ବସେ ଭଳିକି ଭଳି ।

## ଅଭ୍ୟାସ

୧. ଆସ ଆମ ଘର ବିଷୟରେ ଜାଣିବା ।
 (କ) ତୁମ ଘରେ କିଏ କିଏ ଅଛନ୍ତି ?
 (ଖ) ତୁମେ କାହାଠାରୁ ଓ କେତେବେଳେ ଗପ ଶୁଣ ?
 (ଗ) ମା' ରୋଷେଇ ଘରେ କ'ଣ କ'ଣ କରନ୍ତି ?
 (ଘ) ଫୁଲ ବଗିଚାର ତଳଟି କିପରି ଦିଶୁଥାଏ ?
୨. ତୁମ ଘରେ କେତେଜଣ ଲୋକ ଅଛନ୍ତି କହ ?
 ସେମାନଙ୍କ ମଧ୍ୟରୁ କିଏ ତୁମକୁ ଗପ କହନ୍ତି ?
୩. ତୁମକୁ ଯେଉଁ ପଦଟି ଭଲ ଲାଗୁଛି ତା'ର ଅଭିନୟ କରି ଦେଖାଅ ।
୪. ଗୀତ ଅନୁଯାୟୀ ଠିକ୍ କରି କହ ଏବଂ ଦେଖ ପ୍ରତ୍ୟେକ ଧାଡ଼ିରେ କେତୋଟି ଅକ୍ଷର ଅଛି ।
 'ପରଜାପତି ଉଡ଼ି ଉଡ଼ି ଆସେ
 ତରକାଅତି ବୁଲେ ଏଇଠି
 କଳସୀ ଆଣି ଗଛମୂଳେ
 ଫୁଲ ଦିଏ ମୁଁ ଆଣି''
୫. ତୁମ ବଗିଚାରେ ଆଉ କି କି ଫୁଲ ଫୁଟିଛି ଏବଂ ତା'ର ରଙ୍ଗ କ'ଣ ?
୬. ତୁମକୁ କେଉଁ ପିଠା ଭଲ ଲାଗେ ଏବଂ କାହିଁକି ?

୭. ଆରିସା, କାକରା ଛଡ଼ା ତୁମ ଘରେ ଆଉ କି କି ପିଠା ହୁଏ ଲେଖ ଓ ତା'ର ଚିତ୍ର କର ।

| |
|---|
| |

୮. କବିତାରେ ଥିବା ଶବ୍ଦଗୁଡ଼ିକୁ ବାଛ ।

କବିତାରେ ଅଛି




କବିତାରେ ନାହିଁ

୯. ତୁମ ବଗିଚାରେ ଥିବା ଫଳ ଗୁଡ଼ିକର ଚିତ୍ର କର ଏବଂ ତାକୁ ରଙ୍ଗ ଦିଅ ।



ଗାଁ'ର ସଂଧ୍ୟା ସମୟର ଦୃଶ୍ୟକୁ ସଂପୂର୍ଣ୍ଣ କରି ରଂଗ ଦିଅ ।

୧୦. ରୋଷେଇଘର ଜିନିଷ ରୋଷେଇଘରକୁ ଏବଂ ପଢ଼ିବା ଘରର ଜିନିଷ ପଢ଼ିବାଘରକୁ ନିଅ ।

ବହି, କଲମ, ଖାତା, ଚଟୁ, ମାଠିଆ, ରବର, ପନିକି, ଛୁରୀ, କମ୍ପାସ

| ପଢ଼ିବା ଘର | ରୋଷେଇ ଘର |
|---|---|

୧୧. ତୁମ ପଢିବା ଘରେ କି କି ଜିନିଷ ଅଛି ଲେଖ ।





ଜନ-ଗଣ-ମନ-ଅଧିନାୟକ ଜୟହେ
ଭାରତ- ଭାଗ୍ୟ- ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜୁରାଟ-ମରାଠା
ଦ୍ରାବିଡ଼ ଉତ୍କଳ ବଙ୍ଗ
ବିନ୍ଧ୍ୟ- ହିମାଚଳ-ଯମୁନା ଗଙ୍ଗା
ଉଚ୍ଛଳ-ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନ-ଗଣ-ମଙ୍ଗଳ ଦାୟକ ଜୟ ହେ
ଭାରତ ଭାଗ୍ୟ ବିଧାତା
ଜୟ ହେ, ଜୟ ହେ, ଜୟ ହେ,
ଜୟ ଜୟ ଜୟ ଜୟ ହେ ।

**କ'ଣ ଶିଖିବେ:**

ଭାଷା ଓ ପରିବେଶ

- ନିଜ ଘର ପ୍ରତି ମମତା ଜନ୍ମାଇବେ ।
- ମା ହେଉଛି ଶିଶୁର ନିଜସ୍ୱ ଏହା ଜାଣିବେ ।
- ଘରେ ସମସ୍ତ ଏକାଠି ରହିଲେ ଆନନ୍ଦ ମିଳେ ଏହା ଅନୁଭବ କରିବେ ।
- ଭାଇ, ଭଉଣୀ, ବାପା, ମାଆ, ଜେଜେ ମାଆ, ଜେଜବାପାଙ୍କ ମଧ୍ୟରେ ଉତ୍ତମ ସଂପର୍କ ରଖିପାରିବେ ।
- ଗୃହିଣୀର କାର୍ଯ୍ୟ କ'ଣ ଜାଣିବେ ।

**ସୂଚନା**

- ଘରର ମହତ୍ତ୍ୱ ବୁଝିବେ ।
- ଘରର ସଦସ୍ୟ ମାନଙ୍କ ମଧ୍ୟରେ ସୁସଂପର୍କ ରହିଲେ ଘରେ କୌଣସି ବିଶୃଙ୍ଖଳ ହେବନାହିଁ । ଏହା ବୁଝିବେ ।
- ମାଆର କାର୍ଯ୍ୟକ'ଣ ତାହା ଏଥିରେ ଦିଆଯାଇଛି ।
- ଘରର ଚିତ୍ର ମଧ୍ୟ ଏଠାରେ ଦିଆଯାଇଛି ।

**ଶିକ୍ଷକଙ୍କ କାର୍ଯ୍ୟ**

- ଶିକ୍ଷକ ପ୍ରଶ୍ନ ଖେଳ ମାଧ୍ୟମରେ ଓ କବିତା ସଂପର୍କିତ ଅନ୍ୟ କବିତାଂଶ ସାହାଯ୍ୟରେ ଉକ୍ତ ପାଠଟିକୁ ପଢ଼ାନ୍ତୁ ।
- ତୁମ ଘରେ ତୁମେ କେଉଁ ମାନଙ୍କ ସହ ରହ ?
- ମାଆ ତୁମକୁ କ'ଣ ଖାଇବାକୁ ଦିଅନ୍ତି ?
- କିଏ ତୁମକୁ ଗପ କହେ ? ଇତ୍ୟାଦି ପ୍ରଶ୍ନ ପଚାରନ୍ତୁ ।

**ପିଲାଙ୍କ କାର୍ଯ୍ୟ** ପିଲାଙ୍କୁ ଦୁଇଦଳରେ ବିଭକ୍ତ କରାଯିବ । ପ୍ରଥମ ଦଳ କେତେକ ପର୍ବର ନାମ ଲେଖାଥିବା କାର୍ଡ଼ ଦେଖାଇବେ ଓ ଦ୍ୱିତୀୟ ଦଳ ତତ୍ ସଂଲଗ୍ନ ପିଠାପଣାର ନାମ କହିବେ । ଏହିପରି ଖେଳ ଚାଲୁ ରହିବ ।

**ଆମେ ଜାଣିବା**

- ମାଆ ହେଉଛି ସ୍ୱର୍ଗଠାରୁ ବଡ଼
- ''ବାତ୍ସଲ୍ୟ ସ୍ନେହ ହିଁ ଅନାବିଳ''

**ପ୍ରକଳ୍ପ** ତୁମ ବଗିଚାରେ କେତେ ପ୍ରକାର ଫୁଲ ଫୁଟେ ତା'ର ଏକ ତାଲିକା କର ।

ପିଲାଙ୍କୁ ପ୍ରଶ୍ନଖେଳ ମାଧ୍ୟମରେ କେତେକ କଥା ଉପସ୍ଥାପିତ କରାଯାଇ ପାରେ ।

୧. ରୋଷେଇ ଘରେ ମାଆ କ'ଣ କରନ୍ତି ?

୨. ଫୁଲ ବଗିଚାରେ କି ଫୁଲ ଫୁଟେ ?

୩. ତୁମଘରେ ତୁମେ କେବେ ଭାଇ ଓ ଭଉଣୀ ସହ ମିଶି ଯାତ୍ରା ବଗିଚାରେ ପାଣି ଦେଇଛ ?

୪. ତୁମେ ଚିତ୍ର ଆଙ୍କକି ? ତେବେ କାହା ସାହାଯ୍ୟରେ ଆଙ୍କ ?

**ଉପକରଣ** ଘରର ଚିତ୍ର, ଫ୍ଲାସ୍‌କାର୍ଡ଼

## ବାର୍ଷିକ ପରୀକ୍ଷା

## ମାତୃଭାଷାରେ ନ୍ୟୁନତମ ଶିକ୍ଷଣ ସ୍ତର (ଦ୍ୱିତୀୟ ଶ୍ରେଣୀ)

| କ୍ର ନଂ. | ପ୍ରସଙ୍ଗ | କ୍ରମାଙ୍କ | ଦକ୍ଷତା |
|---|---|---|---|
| ୧. | ଶୁଣିବା | ୧.୨.୧ | ସରଳ ଏବଂ ଅପରିଚିତ ପଦ୍ୟ, ଗୀତ ଓ ଗଳ୍ପକୁ ବୁଝିବା ଭଳି ଶୁଣିବେ । |
| | | ୧.୨.୨ | ପରିଚିତ ପରିସ୍ଥିତିରେ କଥୋପକଥନ ଓ ସଂଳାପକୁ ବୁଝିବେ । |
| | | ୧.୨.୩ | ପରିଚିତ ପରିସ୍ଥିତିରେ ମୌଖିକ ଅନୁରୋଧ, ଉପଦେଶ, ଆଦେଶ ଏବଂ ପ୍ରଶ୍ନକୁ ବୁଝିବେ । |
| ୨. | କହିବା | ୨.୨.୧ | ଭାଷାର ସମସ୍ତ ଧ୍ୱନିକୁ ଉଚ୍ଚାରଣ କରିବେ । |
| | | ୨.୨.୨ | ଦଳଗତ କିମ୍ବା ବ୍ୟକ୍ତିଗତଭାବେ ପଦ୍ୟ ଓ ଗୀତ ଆବୃତ୍ତି କରିବେ । |
| | | ୨.୨.୩ | ପୂର୍ଣ୍ଣ ବାକ୍ୟରେ ସରଳ ପ୍ରଶ୍ନର ଉତ୍ତର ଦେବେ । |
| | | ୨.୨.୪ | ପରିଚିତ ବିଷୟ ସଂପର୍କରେ ତଥ୍ୟ ସନ୍ଧାନ କରିବେ । |
| ୩. | ପଢ଼ିବା | ୩.୨.୧ | ଯୁକ୍ତାକ୍ଷର ଏବଂ ଫଳା ଓ ମାତ୍ରାଯୁକ୍ତ ଅକ୍ଷର ଚିହ୍ନିବେ । |
| | | ୩.୨.୨ | ବଡ଼ ଓ ଛୋଟ ଛାପା ଅକ୍ଷର ପଢ଼ିବେ । |
| | | ୩.୨.୩ | ଛନ୍ଦ, ପଦ, କବିତା ଓ ସରଳ ଗଳ୍ପକୁ ବଡ଼ ପାଟିରେ ପଢ଼ିବେ । |
| ୪. | ଲେଖିବା | ୪.୨.୧ | ଶବ୍ଦ ଓ ବାକ୍ୟର ନକଲ କରିବେ । |
| | | ୪.୨.୨ | ପରିଚିତ ଶବ୍ଦାବଳୀର ଶ୍ରୁତଲିଖନ ନେବେ । |
| | | ୪.୨.୩ | ସରଳ ନର୍ଦ୍ଦେଶିତ୍ ବର୍ଣ୍ଣାନାତ୍ମକ ବାକ୍ୟ ଲେଖିବେ । |
| ୫. | ଶୁଣିବା ଓ ପଢ଼ିବା ମାଧ୍ୟମରେ ଧାରଣାର ବୋଧଗମ୍ୟତା | ୫.୨.୧ | ସଂକ୍ଷେପରେ ଲିଖିତ କିମ୍ବା କଥିତ ପୁସ୍ତକରେ ବର୍ଣ୍ଣିତ ବିଷୟବସ୍ତୁର ଘଟଣାବଳୀକୁ କ୍ରମାନ୍ୱୟରେ ସ୍ମରଣ କରିବେ । |
| | | ୫.୨.୨ | ଶୁଣିବା ପରେ 'କ'ଣ ଓ କିପରି' ପଚରା ଯାଉଥିବା ପ୍ରଶ୍ନଗୁଡ଼ିକର ଉତ୍ତର ଦେବାକୁ ସମର୍ଥ ହେବେ । |
| ୬. | ବ୍ୟବହାରିକ ବ୍ୟାକରଣ | ୬.୨.୧ | ଆରମ୍ଭ, ଶେଷ ଏବଂ ମୂଳ ଭିତ୍ତିରେ ଶବ୍ଦଗୁଡ଼ିକର ସାଦୃଶ୍ୟ ସଂପର୍କରେ ସଚେତନ ହେବେ । |
| ୭. | ସ୍ୱ-ଶିକ୍ଷଣ | ୭.୨.୧ | ଯଦି ସରଳ ଛବିଳ ଜ୍ଞାନକୋଷ ମିଳୁଥିବ ତେବେ ତା'ର ବ୍ୟବହାର ପାଇଁ ସାମର୍ଥ୍ୟ ହାସଲ କରିବେ । |
| ୮. | ଭାଷାର ବ୍ୟବହାର | ୮.୨.୧ | ନମ୍ରଭାବରେ କହିବେ ଓ ଶୁଣିଲାବେଳେ ଧ୍ୟାନ ପୂର୍ବକ ଶୁଣିବେ । |
| ୯. | ଶବ୍ଦାବଳୀ ନିୟନ୍ତ୍ରଣ | ୯.୨.୧ | ମୋଟାମୋଟିଭାବେ ୨,୦୦୦ (ଦୁଇହଜାର) ଶବ୍ଦର ପଠନ ଓ ଅବବୋଧ କ୍ଷମତା ହାସଲ କରିବେ । |

## ପରିବେଶ ଅଧ୍ୟୟନରେ ନ୍ୟୂନତମ ଶିକ୍ଷଣ ସ୍ତର (ଦ୍ୱିତୀୟ ଶ୍ରେଣୀ)

| କ୍ର. ନଂ. | ପ୍ରସଙ୍ଗ | କ୍ରମାଙ୍କ | ଦକ୍ଷତା |
|---|---|---|---|
| ୧. | ସାମାଜିକ ଓ ପ୍ରାକୃତିକ ପରିବେଶରେ ନିଜର ମଙ୍ଗଳ ପାଇଁ ସଚେତନ ହେବେ । | ୧.୨ | **ଆମ ଖାଦ୍ୟ ଓ ବାସଗୃହ** |
| | | ୧.୨.୧ | ସ୍ୱାସ୍ଥ୍ୟ ପାଇଁ ଖାଦ୍ୟର ଆବଶ୍ୟକତା ଅଛି ବୋଲି ବୁଝିବେ । |
| | | ୧.୨.୨ | ଅପରିଷ୍କାର ଖାଦ୍ୟ, ଜଳ ଏବଂ ରୋଗ ମଧ୍ୟରେ ଥିବା ସମ୍ପର୍କ ଜାଣିବେ । |
| | | ୧.୨.୩ | ବାସଗୃହ ଏକ ମୌଳିକ ଆବଶ୍ୟକତା ବୋଲି ବୁଝିବେ । |
| | | ୧.୨.୪ | ଘର ଓ ତା'ର ଚାରିପାଖ ସଫାସୁତୁରା ରଖିବା କାର୍ଯ୍ୟରେ ଭାଗ ନେବେ । |
| ୨. | ନିଜର ସାମାଜିକ, ନାଗରିକ ପରିବେଶର ଗୁରୁତ୍ୱପୂର୍ଣ୍ଣ ଦିଗଗୁଡ଼ିକୁ ଚିହ୍ନିବେ ଓ ସେଗୁଡ଼ିକର କାର୍ଯ୍ୟକାରିତା ବୁଝିବେ । | ୨.୨ | **ଆମ ସାଇ ପଡ଼ିଶା (ସ୍ଥାନୀୟ ଅଞ୍ଚଳ)** |
| | | ୨.୨.୧ | ଗୁରୁତ୍ୱପୂର୍ଣ୍ଣ ସର୍ବସାଧାରଣ ସ୍ଥାନ ଯଥା- ବିଦ୍ୟାଳୟ, ପଞ୍ଚାୟତ ଗୃହ, ପୋଷ୍ଟ ଅଫିସ୍, ବ୍ୟାଙ୍କ୍, ଡାକ୍ତରଖାନା, ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର, ବଜାର, ହାଟ, ଉପାସନାସ୍ଥଳ ଇତ୍ୟାଦିକୁ ଚିହ୍ନଟ କରିବେ ଓ ସେଗୁଡ଼ିକର ଆବଶ୍ୟକତା ଜାଣିବେ । |
| | | ୨.୨.୨ | ନିୟମିତଭାବରେ ଓ ଯଥା ସମୟରେ ବିଦ୍ୟାଳୟକୁ ଯିବା ଓ ଶ୍ରେଣୀରେ ଯୋଗଦେବାର ଗୁରୁତ୍ୱ ଉପଲବ୍ଧି କରିବେ । |
| ୩. | ବିଭିନ୍ନ କାମ କରୁଥିବା ଲୋକମାନଙ୍କୁ ଜାଣିବେ ଏବଂ ବିଭିନ୍ନ କାମର ଗୁରୁତ୍ୱ ଉପଲବ୍ଧି କରିବେ । | ୩.୨ | **ଆଖ ପାଖ ଅଞ୍ଚଳର ବିଭିନ୍ନ ଜୀବିକା (ବୃତ୍ତି)** |
| | | ୩.୨.୧ | ନିଜ ଅଞ୍ଚଳର ଲୋକଙ୍କ ଜୀବିକାକୁ ଲକ୍ଷ୍ୟ କରିବେ ଏବଂ ସେଗୁଡ଼ିକର ଏକ ତାଲିକା ପ୍ରସ୍ତୁତ କରିବେ । |
| | | ୩.୨.୨ | ଜୀବିକାଗୁଡ଼ିକର ଉପଯୋଗିତା ଜାଣିପାରିବେ । |
| | | ୩.୨.୩ | ଜୀବିକାର ବିଭିନ୍ନତା ଓ ଆବଶ୍ୟକତାକୁ ପସନ୍ଦ କରିବେ । |
| | | ୩.୨.୪ | ଜୀବନରେ ଶ୍ରମର ଗୁରୁତ୍ୱକୁ ଉପଲବ୍ଧି କରିବେ । |
| ୪. | ମନୁଷ୍ୟ ଓ ତାହାର ପରିବେଶ ମଧ୍ୟରେ ଥିବା ଅନ୍ତର୍ନିହିତ ସମ୍ପର୍କକୁ ବୁଝିବେ ଓ ତର୍ଜମା କରିବେ । | ୪.୨ | **ଆମ ପଡ଼ୋଶୀ ଅଞ୍ଚଳ** |
| | | ୪.୨.୧ | ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ସାହାଯ୍ୟରେ ଦିଗ ନିର୍ଣ୍ଣୟ କରିବେ । |
| | | ୪.୨.୨ | ପାଗ ଓ ଋତୁ ମଧ୍ୟରେ ସମ୍ପର୍କ ତଥା ଋତୁ ସହିତ ମନୁଷ୍ୟ, ପଶୁପକ୍ଷୀ ଓ ବୃକ୍ଷଲତା ମଧ୍ୟରେ ସମ୍ପର୍କ ଜାଣିବେ । |

| କ୍ର. ନଂ. | ପ୍ରସଙ୍ଗ | କ୍ରମାଙ୍କ | ଦକ୍ଷତା |
|---|---|---|---|
| | | ୪.୨.୩ | ସ୍ଥାନୀୟ ଭୂମି ରୂପକୁ ମନୁଷ୍ୟ କିପରି ବ୍ୟବହାର କରୁଛି, ତାହା ଜାଣିବେ । |
| | | ୪.୨.୪ | ସ୍ଥାନୀୟ ଅଞ୍ଚଳର ନକ୍ସାରୁ ବିଭିନ୍ନ ତଥ୍ୟ ଜାଣିପାରିବେ । |
| | | | ସ୍ଥାନୀୟ ସାଧାରଣ ବୃକ୍ଷଲତା, ଶସ୍ୟ, ପକ୍ଷୀ ଇତ୍ୟାଦିକୁ ଚିହ୍ନିବେ । |
| ୫. | ମଣିଷର ଅତୀତ ଓ ବର୍ତ୍ତମାନ ମଧ୍ୟରେ ଥିବା ସମ୍ପର୍କକୁ ଲକ୍ଷ୍ୟ କରିବେ ଏବଂ ଅତୀତକୁ ଉପଯୁକ୍ତ ପରିପ୍ରେକ୍ଷୀରେ ବୁଝିବେ । | ୫.୨ | **ଜାତୀୟ ପର୍ବ ଓ ଅନ୍ୟାନ୍ୟ ପର୍ବପର୍ବାଣି** |
| | | ୫.୨.୧ | ଜାତୀୟ ପର୍ବର ଗୁରୁତ୍ୱ ଜାଣିବେ । |
| | | ୫.୨.୨ | ଜାତୀୟ ପର୍ବ ଓ ସାଧାରଣ ପର୍ବପର୍ବାଣିରେ ଭାଗ ନେବେ ଏବଂ ସେଗୁଡ଼ିକ ମଧ୍ୟରେ ଥିବା ପାର୍ଥକ୍ୟ ଜାଣିବେ । |
| | | ୫.୨.୩ | ଜାତୀୟ ପତାକା ବିଷୟରେ ଜାଣିବେ । |
| | | ୫.୨.୪ | ଜାତୀୟ ସଙ୍ଗୀତ ଗାଇବେ । |

# ହସ ଖୁସି (ଭାଷା ଓ ପରିବେଶ) ଦ୍ୱିତୀୟ ଶ୍ରେଣୀ

| କ୍ର.ସଂ | ପ୍ରସଙ୍ଗ | ଦକ୍ଷତା | | ପିରିୟଡ୍ |
|---|---|---|---|---|
| | | ଭାଷା | ପରିବେଶ | |
| ୧. | ଗାଁରେ ସକାଳ (ଚିତ୍ର) | ◆ ଚିତ୍ର ପଠନ<br>◆ ଶବ୍ଦଲିଖନ | ◆ ହସ୍ତ କର୍ମ<br>◆ ଜୀବଜନ୍ତୁଙ୍କ ବିଷୟରେ ଧାରଣା<br>◆ ପରିଷ୍କାର ପରିଚ୍ଛନ୍ନତା | ୧୮ |
| ୨. | କହିଲ ଦେଖି (ପଦ୍ୟ) | ◆ ଭାବ ଲିଖନ<br>◆ ଗୋଲକ ଧନ୍ଦା ବୁଝିବା<br>◆ ଅଙ୍ଗଭଙ୍ଗୀ ସହ ଆବୃତ୍ତି କରିବା | ◆ ସାଧାରଣ ପକ୍ଷୀ ବିଷୟରେ ଜାଣିବା | ୧୫ |
| ୩. | ଅମୂଲ୍ୟର ହଟହଟା (ଗଦ୍ୟ) | ◆ 'ୟ'ଫଳା, ଙ୍ଗ, ଣ୍ଡ ର ପୁନରାବୃତ୍ତି | ◆ ପକ୍ଷୀମାନଙ୍କ ବାସଗୃହ | ୧୬ |
| ୪. | କ୍ରିକେଟ୍ ଖେଳ (ଗଦ୍ୟ) | ◆ 'ସ୍କ', ରେଫ୍, କ୍ର ର ପୁନରାବୃତ୍ତି | ◆ ଭୂମିରୂପ | ୨୦ |
| ୫. | ଗରମ ଗରମ ପୁରି (ପଦ୍ୟ) | ◆ ଗୀତ ଆବୃତ୍ତି<br>◆ ଚିତ୍ର ପଠନ<br>◆ ଶବ୍ଦ ଲିଖନ | ◆ ଖାଦ୍ୟର ପ୍ରକାର | ୧୦ |
| ୬. | ମିନି ଖୁଁ ଖୁଁ ମାଛି ଭୁଁ ଭୁଁ (ଗଦ୍ୟ) | ◆ 'ବ' ଫଳାର ପୁନରାବୃତ୍ତି<br>◆ 'ଯ'ଫଳା<br>◆ 'କ୍ତ'.ଷ୍କ | ◆ ଅପରିଷ୍କାର ଖାଦ୍ୟ ଓ ଜଳରୁ ରୋଗ | ୧୦ |
| ୭. | ଚମ୍ପା ଓ ଚମ୍ପକର ବାହାଘର (ଗଦ୍ୟ) | ◆ ମ୍ପ, ମ୍ଫ, ଷ୍ଟ, ଞ୍ଚ,ସ୍ତ | ◆ ବାସଗୃହ | ୧୦ |
| ୮. | ସପର୍...ର...ସପ୍ (ପଦ୍ୟ) | ◆ ଗୀତ ଆବୃତ୍ତି<br>◆ ହଳନ୍ତର ପୁନରାବୃତ୍ତି | ◆ ବର୍ଷାଋତୁ | ୮ |
| ୯. | ବାଘର କମାଲ୍ (ଚିତ୍ର) | ◆ 'ଷ୍କ' ଓ 'ବ' ଫଳାର ବ୍ୟବହାର | ◆ ଖାଦ୍ୟର ଆବଶ୍ୟକତା | ୧୪ |

| କ୍ର.ସଂ | ପ୍ରସଙ୍ଗ | ଦକ୍ଷତା | | ପିରିୟଡ୍ |
|---|---|---|---|---|
| | | ଭାଷା | ପରିବେଶ | |
| ୧୦. | ଏମିତି ବି ହୁଏ (ପଦ୍ୟ) | ◆ ଗୀତ ଆବୃତ୍ତି<br>◆ ମ୍ପ, ସ୍ତ ର ପୁନରାବୃତ୍ତି | ◆ ଶସ୍ୟ | ୧୨ |
| ୧୧. | ଅତିରୁ ଇତି (ଗଦ୍ୟ) | ◆ ଊ, ଷ୍ଟ ଓ ରେଫ୍ ଚିହ୍ନିବେ, ପଢ଼ିବେ ଓ ଲେଖିବେ | ◆ ପର୍ବପର୍ବାଣି ବିଷୟରେ ଜାଣିବେ | ୧୦ |
| ୧୨. | ଚୋର ଧୋ ଧୋ (ଗଦ୍ୟ) | ◆ ଙ୍ଘ, ମ୍ଭ, ଞ୍ଚ, ଞ୍ଛ, ଞ୍ଜ, ଞ୍ଝ | ◆ ଜଙ୍ଗଲ ଓ ପଶୁପକ୍ଷୀ | ୧୫ |
| ୧୩. | ଜଗୁନୀ ହେଲା ସୁନାପିଲା (ଗଦ୍ୟ) | ◆ ଚ୍ଛ, ଞ୍ଝ, ଚିହ୍ନବେ । ମ୍ଫ, ମ୍ପ ର ପୁନରାବୃତ୍ତି | ◆ ଖାଦ୍ୟ | ୮ |
| ୧୪. | ଦେଖ୍ ତ ପିନ୍ଧି ଦେଖ୍ (ପଦ୍ୟ) | ◆ ଗୀତ ଆବୃତ୍ତି<br>◆ 'ଙ୍ଖ' ର ଧାରଣା | ◆ ଜୀବିକା | ୧୦ |
| ୧୫. | ପାଇଲା ପାନେ (ଗଦ୍ୟ) | ◆ 'ଲ'ଓ 'ଲ' ଫଳା | ◆ ଗଛଲତା | ୮ |
| ୧୬. | ଚାଲ ବୁଲିଯିବା ଗାଁରୁ ସହର (ଚିତ୍ର) | ◆ ସରଳ ବାକ୍ୟ ଲିଖନ | ◆ ଆମ ଅଞ୍ଚଳ ଓ ସହର ବିଷୟରେ ଧାରଣା | ୬ |
| ୧୭. | ଓଃ ମୁଁ କ'ଣ କରିବି (ଗଦ୍ୟ) | ◆ ଷ୍ଠ, ତ୍ମ, ଲ୍ପ ର ବ୍ୟବହାର | ◆ ଆମ ଅଞ୍ଚଳ | ୧୯ |
| ୧୮. | ତୁ କେଉଁଠି ଅଛୁ (ଗଦ୍ୟ) | ◆ ଣ୍ଡ, ଷ୍ଟ, ଷ୍ପ ର ବ୍ୟବହାର | ◆ ବୃକ୍ଷଲତାର ଧାରଣା | ୮ |
| ୧୯. | ମୋ ଗାଁ (ପଦ୍ୟ) | ◆ ଣ୍ଟ | ◆ ଦିଗ ନିର୍ଣ୍ଣୟ ଓ ନକ୍ସା | ୧୪ |
| ୨୦. | ଆସ ଜାଣିବା ଋତୁମାନଙ୍କୁ (ଚିତ୍ର) | ◆ ଚିତ୍ର ଅଧ୍ୟୟନ | ◆ ଋତୁମାନଙ୍କ ଧାରଣା | ୯ |
| ୨୧. | ବେଙ୍ଗ ହେଲା ରାଜା (ଗଦ୍ୟ) | ◆ ଦ୍ଦ, ଦ୍ଧ, ଦ୍ବ ର ଚିହ୍ନଟ ଓ ଧାରଣା | ◆ ଜଳଚର ପ୍ରାଣୀ | ୯ |
| ୨୨. | ଆସ ସଜାଡ଼ିବା ପଢ଼ା ଘରକୁ (ଗଦ୍ୟ) | ◆ 'ଷ୍ଟ'କୁ ଚିହ୍ନିବେ, ପଢ଼ିବେ ଓ ଲେଖିବେ | ◆ ଘର ଓ ପରିବେଶ ସଫା ରଖିବା | ୮ |
| ୨୩. | ଫେରିବାଲା (ପଦ୍ୟ) | ◆ ଙ୍ଖ, ମ୍ଫ, ଷ୍ଟ ର ପୁନରାବୃତ୍ତି | ◆ ପଶୁପକ୍ଷୀ ଓ ଫଳ, ହାଟ ବଜାର ବିଷୟରେ ଧାରଣା | ୮ |
| ୨୪. | ଉପରବାଲା ତଳବାଲା (ଗଦ୍ୟ) | ◆ କ୍ଲ, ପ୍ଲ, ମ୍ଳ, ତ୍ମ, ଦ୍ବ ର ବ୍ୟବହାର | ◆ ବ୍ୟାଙ୍କ୍, ପୋଷ୍ଟ ଅଫିସ୍ ପୁନରାବୃତ୍ତି | ୯ |
| ୨୫. | ମୂଷା ଯାଉଛି ଦେଖ (ଗଦ୍ୟ) | ◆ ସ୍ତ, ପ୍ତ, ନ୍ଥ, ଟ୍ଟ | ◆ ରୋଷେଇ ଘରର ବିଭିନ୍ନ ସାମଗ୍ରୀ ଓ ଏହାର ବ୍ୟବହାର | ୮ |

| କ୍ର.ସଂ. | ପ୍ରସଙ୍ଗ | ଦକ୍ଷତା | | ପିରିୟଡ୍ |
|---|---|---|---|---|
| | | ଭାଷା | ପରିବେଶ | |
| ୨୬. | ମିକିର ଯକ୍ଷ ଦେଖା (ଗଦ୍ୟ) | ◆ ଙ୍କ, ସ୍ୱ, ନ୍ତ | ◆ ହାଟ ବଜାର | ୮ |
| ୨୭. | ଆମର ଜାତୀୟ ପର୍ବପର୍ବାଣି (ଗଦ୍ୟ) | ◆ ଗୀତ ଆବୃତ୍ତି<br>◆ ଅନୁଚ୍ଛେଦ ଲିଖନ | ◆ ଜାତୀୟ ପର୍ବ<br>◆ ଆଞ୍ଚଳିକ ପର୍ବପର୍ବାଣି | ୧୫ |
| ୨୮. | ଆମ ଘର (ପଦ୍ୟ) | ◆ ଗୀତ ଆବୃତ୍ତି | ◆ ଘର, ପରିବେଶ ବିଷୟରେ ଧାରଣା | ୮୬ |
| | | | | |

# ଦ୍ୱିତୀୟ ଶ୍ରେଣୀ (ହସଖୁସି)

| ମାସ | ସପ୍ତାହ | ଭାଷା | ପରିବେଶ | ପିରିୟଡ୍ |
|---|---|---|---|---|
| ଜୁନ୍ | ୪ | କଥୋପକଥନ, ଚିତ୍ର ଅଧ୍ୟୟନ (୬) | ପରିବେଶ ଅଧ୍ୟୟନ (୬) | ୧୨ |
| ଜୁଲାଇ | ୧ | ଗାଁରେ ସକାଳ (୬) | ଗାଁରେ ସକାଳ (୫) | ୧୧ |
| | ୨ | ଗାଁରେ ସକାଳ (୫), ଶ୍ରୁତ ଲିଖନ (୨) | ଗାଁରେ ସକାଳ (୨), ପ୍ରକଳ୍ପ କାର୍ଯ୍ୟ (୩) | ୧୨ |
| | ୩ | କହିଲ ଦେଖି (୬) | କହିଲ ଦେଖି (୪) ଦଳଗତ କାର୍ଯ୍ୟ | ୧୦ |
| | ୪ | କହିଲ ଦେଖି (୩), ପ୍ରକଳ୍ପ କାର୍ଯ୍ୟ (୨)<br>ପ୍ରଥମ ଏକକ ପରୀକ୍ଷଣ | କହିଲ ଦେଖି (୨)<br>ପ୍ରଥମ ଏକକ ପରୀକ୍ଷଣ | ୬ |
| ଅଗଷ୍ଟ | ୧ | ଅମୂଲ୍ୟର ହଟହଟା (୬) | ଅମୂଲ୍ୟର ହଟହଟା (୫) | ୧୧ |
| | ୨ | ଅମୂଲ୍ୟର ହଟହଟା (୪)<br>କ୍ରିକେଟ୍ ଖେଳ (୪) | ଅମୂଲ୍ୟର ହଟହଟା (୧)<br>କ୍ରିକେଟ୍ ଖେଳ (୫) | ୧୪ |
| | ୩ | କ୍ରିକେଟ୍ ଖେଳ (୬) | କ୍ରିକେଟ୍ ଖେଳ (୫) | ୧୧ |
| | ୪ | ଗରମ ଗରମ ପୁରି (୬)<br>ଦ୍ୱିତୀୟ ଏକକ ପରୀକ୍ଷଣ | ଗରମ ଗରମ ପୁରି (୪)<br>ଦ୍ୱିତୀୟ ଏକକ ପରୀକ୍ଷଣ | ୧୦ |
| ସେପ୍ଟେମ୍ବର | ୧ | ମିନି ଖୁଁ ଖୁଁ - ମାଛି ଭୁଁ ଭୁଁ (୫)<br>ଦଳଗତ କାର୍ଯ୍ୟ | ମିନି ଖୁଁ ଖୁଁ - ମାଛି ଭୁଁ ଭୁଁ (୫) | ୧୦ |
| | ୨ | ଚମ୍ପା ଓ ଚମ୍ପକର ବାହାଘର (୬)<br>ଶ୍ରୁତ ଲିଖନ (୧) | ଚମ୍ପା ଓ ଚମ୍ପକର ବାହାଘର (୪)<br>ପ୍ରକଳ୍ପ କାର୍ଯ୍ୟ (୨) | ୧୩ |
| | ୩ | ସପର ---ର--ସପ୍ (୫)<br>ପ୍ରକଳ୍ପ କାର୍ଯ୍ୟ (୨) | ସପର୍---ର--- ସପ୍ (୩)<br>ପ୍ରକଳ୍ପ କାର୍ଯ୍ୟ (୨) | ୧୨ |
| | ୪ | ବାଘର କମାଲ୍ (୫)<br>ଶ୍ରୁତ ଲିଖନ (୨) | ବାଘର କମାଲ୍ (୫) | ୧୨ |

| ମାସ | ସପ୍ତାହ | ଭାଷା | ପରିବେଶ | ପିରିୟଡ୍ |
|---|---|---|---|---|
| ଅକ୍ଟୋବର | ୧ | ବାଘର କମାଲ (୩)<br>ପ୍ରକଳ୍ପ କାର୍ଯ୍ୟ (୨)<br>**ତୃତୀୟ ଏକକ ପରୀକ୍ଷଣ** | ବାଘର କମାଲ (୧)<br>ପ୍ରକଳ୍ପ କାର୍ଯ୍ୟ (୩)<br>**ତୃତୀୟ ଏକକ ପରୀକ୍ଷଣ** | ୯ |
| | ୨ | ଏମିତି ବି ହୁଏ (ପଦ୍ୟ) (୫)<br>ପ୍ରକଳ୍ପ କାର୍ଯ୍ୟ (୨) | ଏମିତି ବି ହୁଏ (୪)<br>ପ୍ରକଳ୍ପ କାର୍ଯ୍ୟ (୨) | ୧୩ |
| | ୩ | ଏମିତି ବି ହୁଏ (୨)<br>ଅତିରୁ ଇତି (୫) | ଏମିତି ବି ହୁଏ (୧)<br>ଅତିରୁ ଇତି (୫) | ୧୩ |
| | ୪ | **ଦଶହରା ଛୁଟି** | **ଦଶହରା ଛୁଟି** | |
| ନଭେମ୍ବର | ୧ | ଚୋର ଧୋ ଧୋ (୭) | ଚୋର ଧୋ ଧୋ (୫) | ୧୨ |
| | ୨ | ଚୋର ଧୋ ଧୋ (୨)<br>ପ୍ରକଳ୍ପ କାର୍ଯ୍ୟ (୨)<br>ଶ୍ରୁତ ଲିଖନ (୩) | ଚୋର ଧୋ ଧୋ (୧)<br>ପ୍ରକଳ୍ପ କାର୍ଯ୍ୟ (୩) | ୧୧ |
| | ୩ | ଜଗୁନୀ ହେଲା ସୁନାପିଲା (୫)<br>ରଚନା (୨) | ଜଗୁନୀ ହେଲା ସୁନା ପିଲା (୩)<br>ପ୍ରକଳ୍ପ କାର୍ଯ୍ୟ (୨) | ୧୨ |
| | ୪ | ପୁନରାବୃତ୍ତି<br>**ଷାଣ୍ମାସିକ ପରୀକ୍ଷା** | ପୁନରାବୃତ୍ତି<br>**ଷାଣ୍ମାସିକ ପରୀକ୍ଷା** | |

| ମାସ | ସପ୍ତାହ | ଭାଷା | ପରିବେଶ | ପିରିୟଡ୍ |
|---|---|---|---|---|
| ଡିସେମ୍ବର | ୧ | ଦେଖ ତ ପିଛି ଦେଖ (୬)<br>ଦଳଗତ କାର୍ଯ୍ୟ | ଦେଖ ତ ପିଛି ଦେଖ (୪)<br>ପ୍ରକଳ୍ପ କାର୍ଯ୍ୟ (୨) | ୧୨ |
| | ୨ | ପାଇଲା ପାନେ (୪)<br>ଶ୍ରୁତ ଲିଖନ (୨) | ପାଇଲା ପାନେ (୪)<br>ପ୍ରକଳ୍ପ କାର୍ଯ୍ୟ (୨) | ୧୨ |
| | ୩ | ଚାଲ ବୁଲିଯିବା ଗାଁରୁ ସହର (୨)<br>ରଚନା (୩) | ଚାଲ ବୁଲିଯିବା ଗାଁରୁ ସହର (୪)<br>ପ୍ରକଳ୍ପ କାର୍ଯ୍ୟ (୨) | ୧୧ |
| | ୪ | **ଧାନକଟା ଛୁଟି** | **ଧାନକଟା ଛୁଟି** | |
| ଜାନୁଆରୀ | ୧ | ଓଃ ମୁଁ କ'ଣ କରିବି (୬) | ଓଃ ମୁଁ କ'ଣ କରିବି (୫) | ୧୧ |
| | ୨ | ଓଃ ମୁଁ କ'ଣ କରିବି (୪)<br>**ଚତୁର୍ଥ ଏକକ ପରୀକ୍ଷଣ** | ଓଃ ମୁଁ କ'ଣ କରିବି (୪)<br>**ଚତୁର୍ଥ ଏକକ ପରୀକ୍ଷଣ** | ୮ |
| | ୩ | ତୁ କେଉଁଠି ଅଛୁ (୫)<br>ମୋ ଗାଁ (ପଦ୍ୟ) (୨) | ତୁ କେଉଁଠି ଅଛୁ (୩)<br>ମୋ ଗାଁ (୨) | ୧୨ |
| | ୪ | ମୋ ଗାଁ (ପଦ୍ୟ) (୬)<br>ଶ୍ରୁତ ଲିଖନ (୨) | ମୋ ଗାଁ (୪)<br>ଦଳଗତ କାର୍ଯ୍ୟ | ୧୨ |
| ଫେବୃଆରୀ | ୧ | ଆସ ଜାଣିବା ଋତୁମାନଙ୍କୁ (୪)<br>ରଚନା ଲିଖନ (୨) | ଆସ ଜାଣିବା ଋତୁମାନଙ୍କୁ (୫)<br>ପ୍ରକଳ୍ପ କାର୍ଯ୍ୟ (୧) | ୧୨ |
| | ୨ | ବେଙ୍ଗ ହେଲା ରାଜା (୫)<br>ଶ୍ରୁତ ଲିଖନ (୨) | ବେଙ୍ଗ ହେଲା ରାଜା (୪)<br>ପ୍ରକଳ୍ପ କାର୍ଯ୍ୟ (୨) | ୧୩ |
| | ୩ | ଆସ ସଜାଡ଼ିବା ପଢ଼ା ଘରକୁ (୨)<br>**ପଞ୍ଚମ ଏକକ ପରୀକ୍ଷଣ** | ଆସ ସଜାଡ଼ିବା ପଢ଼ା ଘରକୁ (୨)<br>**ପଞ୍ଚମ ଏକକ ପରୀକ୍ଷଣ** | ୪ |
| | ୪ | ଆସ ସଜାଡ଼ିବା ପଢ଼ା ଘରକୁ (୪)<br>ଶ୍ରୁତ ଲିଖନ (୨) | ଆସ ସଜାଡ଼ିବା ପଢ଼ା ଘରକୁ (୪)<br>ପ୍ରକଳ୍ପ କାର୍ଯ୍ୟ (୨) | ୧୨ |

| ମାସ | ସପ୍ତାହ | ଭାଷା | ପରିବେଶ | ପିରିୟଡ୍ |
|---|---|---|---|---|
| ମାର୍ଚ୍ଚ | ୧ | ଫେରିବାଲା (୫)<br>ଉପରବାଲା ତଳବାଲା (୨) | ଫେରିବାଲା (୩)<br>ପ୍ରକଳ୍ପ କାର୍ଯ୍ୟ (୨) | ୧୨ |
| | ୨ | ଉପର ବାଲା ତଳବାଲା (୩)<br>ପ୍ରକଳ୍ପ କାର୍ଯ୍ୟ (୩) | ଉପର ବାଲା ତଳ ବାଲା (୪)<br>ପୁନରାବୃତ୍ତି | ୧୦ |
| | ୩ | ମୂଷା ଯାଉଛି ଦେଖ (୪)<br>**ଷଷ୍ଠ ଏକକ ପରୀକ୍ଷଣ** | ମୂଷା ଯାଉଛି ଦେଖ (୪)<br>**ଷଷ୍ଠ ଏକକ ପରୀକ୍ଷଣ** | ୫ |
| | ୪ | ମିକିର ଯଜ୍ଞ ଦେଖା (୫)<br>ଶ୍ରୁତ ଲିଖନ (୨) | ମିକିର ଯଜ୍ଞ ଦେଖା (୩)<br>ପ୍ରକଳ୍ପ କାର୍ଯ୍ୟ (୨) | ୧୨ |
| ଏପ୍ରିଲ୍ | ୧ | ଆମର ଜାତୀୟ ପର୍ବ ପର୍ବାଣି (୭) | ଆମର ଜାତୀୟ ପର୍ବ ପର୍ବାଣି (୫) | ୧୨ |
| | ୨ | ଆମର ଜାତୀୟ ପର୍ବ ପର୍ବାଣି (୨)<br>ଆମ ଘର (୫) | ଆମର ଜାତୀୟ ପର୍ବ ପର୍ବାଣି (୧)<br>ପ୍ରକଳ୍ପ କାର୍ଯ୍ୟ (୨)<br>ଆମ ଘର (୨) | ୧୨ |
| | ୩ | ଆମ ଘର (୫)<br>ରଚନା ଲିଖନ (୨) | ଆମ ଘର (୪)<br>ପ୍ରକଳ୍ପ କାର୍ଯ୍ୟ (୨) | ୧୩ |
| | ୪ | ବାର୍ଷିକ ପରୀକ୍ଷା | ବାର୍ଷିକ ପରୀକ୍ଷା | |
| ମଇ | ପ୍ରକଳ୍ପ କାର୍ଯ୍ୟ, ବଗିଚା କାମ, ନମୁନା ପ୍ରସ୍ତୁତି | | | |

